# ଇତିକଥା

# ଶ୍ରୀରାମ ଜନ୍ମଭୂମିର



ବିଶ୍ୱହିନ୍ଦୁ ପରିଷଦ, ଓଡ଼ିଶା
ପ୍ରଚାର ବିଭାଗ
ବିଶ୍ୱନାଥମନ୍ଦିର, କଟକ-୩



# ଶ୍ରୀରାମ ଜନ୍ମଭୂମିର ଇତିକଥା

ପରମ କାରୁଣିକ ପରମେଶ୍ୱର ପ୍ରଭୁ ପୁରୁଷୋତ୍ତମ ଶ୍ରୀରାମ, ଯାହାଙ୍କର କେବଳ ନାମ ମାତ୍ରହିଁ ଜନ୍ମଜନ୍ମାନ୍ତରର ପାପରୁ ମନୁଷ୍ୟଙ୍କୁ ମୁକ୍ତି ପ୍ରଦାନ କରିଥାଏ, ଯାହାଙ୍କ ନାମ ଜପ କରୁ କରୁ ଦସ୍ୟୁ ରତ୍ନାକର ମଧ୍ୟ ମହର୍ଷି ବାଲ୍ମୀକୀ ହୋଇଯାଏ, ଯାହାଙ୍କର ନାମ ସ୍ମରଣ ମାତ୍ରହିଁ ମହା ପୁଣ୍ୟକର, ସେହି ପରମ କୃପାମୟ ଭଗବାନ ଶ୍ରୀରାମଙ୍କୁ ନିଜ ବକ୍ଷରେ ଯେଉଁ ମାଟି ଜନ୍ମ ଦେଇଛି ସେ ମାଟି କେତେ ପବିତ୍ର ପାବନ ନ ହୋଇଥିବ ! ସେହି ପୁଣ୍ୟ ଭୂମି ଅଯୋଧ୍ୟା ଯାହାକି ଅବଧପୁରୀ ଭାବରେ ସୁପରିଚିତ, ଯାହା ବିଷୟରେ ଅଥର୍ବ ବେଦରେ କୁହାଯାଇଛି ଯେ—'ଅଯୋଧ୍ୟା ସମ୍ପୂର୍ଣ୍ଣ ବୈକୁଣ୍ଠ ସ୍ଥଳ ଯେଉଁଠାରେ କି ଶ୍ରୀ ସୀତାରାମଙ୍କର ନିତ୍ୟ ବିହାର ।' ସ୍କନ୍ଦ ପୁରାଣରେ ଅଯୋଧ୍ୟା ମହାତ୍ମ୍ୟ ବର୍ଣ୍ଣନାରେ ଲେଖାଯାଇଛି ଯେ ଅଯୋଧ୍ୟା ଦର୍ଶନରେ ତପସ୍ୱୀ ମାନଙ୍କର ତପଃ ସାଧନାର ଫଳ ମିଳେ । (୧୦ ଅ: ୨୭ ଶ୍ଳୋକ)

ମହର୍ଷି ବାଲ୍ମୀକୀ ଯେଉଁ ଅଯୋଧ୍ୟାରେ ପରମ ପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କର ପୁଣ୍ୟ ଜନ୍ମ ସ୍ଥାନର ଦିବ୍ୟ ପ୍ରାସାଦର ବର୍ଣ୍ଣନା କରିଛନ୍ତି; ଗୋସ୍ୱାମୀ ତୁଳସୀ ଦାସଜୀ ଯାହାକୁ—

"ବନ୍ଦଉଁ ଅବଧପୁରୀ ଅତି ପାବନି
ସରଯୂ ସରି କଲି କଲୁଷ ନସାଓ୍ୱନି ।
ପ୍ରନବଉଁ ପୁର ନର ନାରୀ ବହୋରି
ମମତା ଜିହ୍ନ ପର ପ୍ରଭୁହି ନ ଥୋରି ॥"

କରି ବନ୍ଦନା କରି ଅଛନ୍ତି । ଲୋମଶ ରାମାୟଣର ବର୍ଣ୍ଣନା ଅନୁସାରେ ଭଗବାନ ଶ୍ରୀରାମଚନ୍ଦ୍ର ଏହି ପୁଣ୍ୟ ପୀଠ ଅଯୋଧ୍ୟାର ଯେଉଁ ଭବନରେ ଭୂମିଷ୍ଠ ହୋଇଥିଲେ ତାହା ସୂର୍ଯ୍ୟବଂଶୀ ରାଜା ଅନରଣ୍ୟଙ୍କ ଦ୍ୱାରା ନିର୍ମିତ ହୋଇଥିଲା । ପରେ ଶ୍ରୀରାମଚନ୍ଦ୍ରଙ୍କର ପୁତ୍ର କୁଶଙ୍କ ଦ୍ୱାରା ଏହାର ପୁନର୍ଗଠନ ହୋଇଥିଲା । କ୍ରମଶଃ କାଳଗର୍ଭରେ ଏହା ଧ୍ୱଂସ ହେବାକୁ ବସିଲା ।

ପରବର୍ତ୍ତୀ କାଳରେ ଭାରତ ବର୍ଷର ପ୍ରଖ୍ୟାତ ସମ୍ରାଟ ଶକାରି ବିକ୍ରମାଦିତ୍ୟ ସେହି ଜନ୍ମସ୍ଥଳୀ ଉପରେ ଏକ ଭବ୍ୟ ମନ୍ଦିର ନିର୍ମାଣ କରିଥିଲେ । କିମ୍ବଦନ୍ତୀ ଅନୁସାରେ ଭଗବାନ ରାମଚନ୍ଦ୍ରଙ୍କ ପୁତ୍ର କୁଶଙ୍କ ଦ୍ୱାରା ସରଯୂ ନଦୀ ତଟରେ ଯୋଗେଶ୍ୱରନାଥ ଶିବଙ୍କର ଏକ ମନ୍ଦିର ନିର୍ମିତ ହୋଇଥିଲା ଏବଂ ଏହି ମନ୍ଦିର ପଛପଟକୁ କାଲେରାମ ମନ୍ଦିର ପ୍ରତିଷ୍ଠିତ ହୋଇଥିଲା । ଗୋଟିଏ କଳା ମୁଗୁନି ପଥର ଦେହରେ 'ରାମପଞ୍ଚାୟତନ' ମୂର୍ତ୍ତି ନିର୍ମାଣ କରି ଏହି ମନ୍ଦିରରେ ସ୍ଥାପନା କରାଯାଇଥିଲା । ମହାରାଜ ବିକ୍ରମାଦିତ୍ୟ ରାମଜନ୍ମଭୂମି ମନ୍ଦିରରେ ଏହି ମୂର୍ତ୍ତିଟି ସ୍ଥାପନ କରିଥିବେ । ମୋଗଲ ଆକ୍ରମଣକାରୀ ମାନଙ୍କର ଅଯୋଧ୍ୟା ଆକ୍ରମଣ ସମୟରେ ଏହି ମୂର୍ତ୍ତିଟିକୁ ନେଇ ସରଯୂ ନଦୀରେ ଭସାଇ ଦିଆଯାଇଥିଲା ।

ମହାରାଜ ବିକ୍ରମାଦିତ୍ୟ ଅଯୋଧ୍ୟାରେ ରାମଜନ୍ମଭୂମି ମନ୍ଦିର ଯେତେବେଳେ ନିର୍ମାଣ କରିଥିଲେ, ସେହି କାଳଖଣ୍ଡରେ ଅଯୋଧ୍ୟାର ଶ୍ରୀରାମ ମନ୍ଦିର କନକ-ଭବନ, କାଶ୍ମୀରର ସୂର୍ଯ୍ୟମନ୍ଦିର ଓ ପ୍ରଭାସ ପତ୍ତନର ଶ୍ରୀ ସୋମନାଥ ମନ୍ଦିର ବିଶ୍ୱ-ବିଖ୍ୟାତ ଥିଲା । ଏହି ମନ୍ଦିରମାନଙ୍କ ତୁଳନାରେ ପୃଥିବୀରେ ସେପରି କୌଣସି ମନ୍ଦିର ଆଦି ନଥିଲା । ଐତିହାସିକ ଶ୍ରୀ ଏଚ୍. ଇଲିୟଟଙ୍କ ମତରେ ସମ୍ରାଟ ବିକ୍ରମାଦିତ୍ୟ ଅଯୋଧ୍ୟାରେ ଅନ୍ୟ ୩୬୦ଟି ସ୍ଥାନରେ ମଧ୍ୟ ମନ୍ଦିର ନିର୍ମାଣ କରାଇ-ଥିଲେ ଯାହାକି ଭଗବାନ ଶ୍ରୀରାମଙ୍କ ସହ ସମ୍ବନ୍ଧିତ ଥିଲା । ଜନ୍ମଭୂମିର ମୁଖ୍ୟ ମନ୍ଦିର ମୂଲ୍ୟବାନ ୮୪ଟି କଷଟି ପଥରର ଖମ୍ବ ଉପରେ ଥିଲା ।

କିନ୍ତୁ ଭଗବାନ ରାମଙ୍କ ଜନ୍ମସ୍ଥଳୀରେ ସମ୍ରାଟ ବିକ୍ରମାଦିତ୍ୟଙ୍କ ଦ୍ୱାରା ନିର୍ମିତ ଭବ୍ୟ ମନ୍ଦିର ବହିରାଗତ ଯବନମାନଙ୍କ କବଳରୁ ନିଜର ତନୁଶ୍ରୀକୁ ରକ୍ଷା କରି ପାରିଲା ନାହିଁ । ୧୫୨୭ରେ ଫତେପୁର ସିକ୍ରୀର ଐତିହାସିକ ଯୁଦ୍ଧରେ



ରାମ ଜନ୍ମଭୂମି ମନ୍ଦିରର ସମ୍ମୁଖ ଭାଗ ଉପରେ ରାମ-ଜନ୍ମଭୂମି ଲେଖାହୋଇଛି ।

ଚିତୋରର ରାଜା ସଂଗ୍ରାମସିଂହଙ୍କଦ୍ୱାରା ପରାଜିତ ହୋଇ ବାବର ଅଯୋଧ୍ୟା ଚାଲି ଆସିଲା । ସେହି ସମୟରେ ଅଯୋଧ୍ୟାରେ ବାବା ଶ୍ୟାମାନନ୍ଦଜୀ ନାମକ ଜଣେ ସିଦ୍ଧ ମହାତ୍ମା ବାସ କରୁଥିଲେ । ମହାତ୍ମାଙ୍କ ସିଦ୍ଧି ସମଗ୍ର ଉତ୍ତର ଭାରତରେ ପ୍ରଖ୍ୟାତ ଥିଲା । ବାବାଙ୍କର ଏହି ସିଦ୍ଧିର ମହିମାରେ ପ୍ରଭାବିତ ହୋଇ କଜଲ ଅବ୍ବାସ ମୂସା ଆଶିକାନ୍ ନାମକ ଜଣେ ଫକୀର ବାବାଙ୍କର ଶିଷ୍ୟତ୍ୱ ସ୍ୱୀକାର କରି ଯୋଗଶିକ୍ଷା କଲେ । ବାବାଙ୍କ ମହାତ୍ମାରୁ ଶିଷ୍ୟ କଜଲ ଅବ୍ବାସ ମଧ୍ୟ ଜଣେ ସିଦ୍ଧ ଫକୀର ହୋଇଗଲେ । ଫକୀର ଅବ୍ବାସଙ୍କ ଖ୍ୟାତି ଶୁଣି ଜଲାଲଶାହା ନାମରେ ଅନ୍ୟ ଜଣେ ଫକୀର ମଧ୍ୟ ସିଦ୍ଧ ବାବାଙ୍କର ଶିଷ୍ୟତ୍ୱ ଗ୍ରହଣ କଲେ । କିନ୍ତୁ ଜଲାଲଶାହା ଜଣେ ଉଗ୍ର ଜାତିଆଣ ସ୍ୱବପୂର୍ତ୍ତି

ମୁସଲମାନ ଥିଲେ । ବାବା ଶ୍ୟାମାନନ୍ଦଙ୍କ ନିକଟରେ ଅବସ୍ଥାନ କରିବା ସମୟରେ ଜଲଲଶାହ ହୃଦୟଙ୍ଗମ କଲେ ଯେ ଅଯୋଧ୍ୟା ଗୋଟିଏ ମହତ୍ତ୍ୱପୂର୍ଣ୍ଣ ଭୂମି ଏବଂ ଗୋଟିଏ ସିଦ୍ଧ ପୀଠ । ଅଯୋଧ୍ୟାରେ ଗୋଟିଏ ମନ୍ତ୍ର ବା ଅନୁଷ୍ଠାନର ଯୋଜନା ଦ୍ୱାରା ଅନନ୍ତ କୋଟି କଲ୍ୟାଣ ଲାଭ ହେଉଛି । ତେଣୁ ଅଯୋଧ୍ୟାକୁ ମୁସଲମାନମାନଙ୍କର ଏକ ତୀର୍ଥକ୍ଷେତ୍ରରେ ପରିଣତ କରିବାକୁ ଆରମ୍ଭ କରିଦେଲେ । ପୁରାତନ ପଦ୍ଧତିରେ କବର ନିର୍ମାଣ ହେବା ଆରମ୍ଭ ହୋଇଗଲା । ପୁରାତନ ମୁନିଋଷିମାନଙ୍କର ସମାଧିସ୍ଥଳ ସବୁକୁ ବିକୃତ କରାଯାଇ କବରରେ ପରିଣତ କରାଗଲା । ମୃତ ମୁସଲମାନମାନଙ୍କ 'ଦୋବାରା ଜିନ୍ଦେଗୀ' ଅର୍ଥାତ୍ 'ଦ୍ୱାପ୍ରକାମ ଜୀବନ' ନିମନ୍ତେ ଦୂରଦୂରାନ୍ତରୁ ମୃତ ମୁସଲମାନମାନଙ୍କ ଶବ ଅଯୋଧ୍ୟା ଅଣାଯାଇ କବର ଦିଆଗଲା । ପୁଣ୍ୟ ପୀଠ ଅଯୋଧ୍ୟା 'କବର ସ୍ଥାନ'ରେ ପରିଣତ ହେଲା ।

କ୍ରମଶଃ ଏହି ଦୁଇ ମୁସଲମାନ ଫକୀରଙ୍କ ସିଦ୍ଧି ବିଷୟ ମଧ୍ୟ ପ୍ରଚାରିତ ହେଲା । ବାବର ଫତେପୁର ସିକ୍ରୀ ଯୁଦ୍ଧରେ ପରାଜିତ ହୋଇ ଶ୍ରାନ୍ତ କ୍ଲାନ୍ତ ଅବସନ୍ନ ହୋଇ ଅଯୋଧ୍ୟା ପହଞ୍ଚିଥିଲା । ଶାନ୍ତି ପାଇବା ଉଦ୍ଦେଶ୍ୟରେ ସେ ଶାହା ଓ ଆବ୍‌ବାସଙ୍କୁ ଦର୍ଶନ କରିବାକୁ ଆସିଲା ଏବଂ ନିଜର ଦୁଃଖ କାହାଣୀ ଜଣାଇଲା । ଫକୀର ଦ୍ୱୟଙ୍କର 'ପୁଣି ଯୁଦ୍ଧ କର ବିଜୟଲାଭ କରିବ' ବୋଲି ଆଶୀର୍ବାଦ ପାଇ ତିନି ଲକ୍ଷ ସୈନ୍ୟ ଯୋଗାଡ଼ି କରି ବାବର ପୁଣି ଥରେ ରାଣା ସଂଗ୍ରାମ ସିଂହଙ୍କ ସହ ଯୁଦ୍ଧ କଲା ଏବଂ ଯୁଦ୍ଧରେ ବିଜୟୀ ହେଲା । ବିଜୟ ପ୍ରାପ୍ତି ପରେ ଫକୀର ଦୁହିଁଙ୍କ ନିକଟକୁ ନିଜର କୃତଜ୍ଞତା ପ୍ରକାଶ କରିବାକୁ ଯାଇ ବହୁ ମୂଲ୍ୟବାନ ପୋଷାକ ପରିଚ୍ଛଦ ଏବଂ ଆଭୂଷଣ ଭେଟି ସ୍ୱରୂପ ପ୍ରଦାନ କଲା । କିନ୍ତୁ ଫଜଲ ଆବ୍‌ବାସ କଲନ୍ଦର ଏ ଉପଢୌକନ ଆଡକୁ ଚାହିଁଲେ ମଧ୍ୟ ନାହିଁ । ଫଳରେ ବାବରର ମନରେ ଫକୀର ପ୍ରତି ଶ୍ରଦ୍ଧା ଅଧିକ ବଢ଼ିଗଲା । ତେଣୁ ସେ ଅଯୋଧ୍ୟା ଛାଡ଼ିବା ପୂର୍ବରୁ ଫକୀର ସାହେବଙ୍କୁ ପଚାରିଲା, 'ଅଧୀନ ପ୍ରତି ଯଦି କିଛି ଆଦେଶ ଥାଏ ଦୟାକରି କହନ୍ତୁ ।'

ଠିକ ସମୟ ଜାଣି ଫକୀର କହିଲେ 'ବାଦଶାହ ବାବର, ଯଦି ତୋର ମୋ ପ୍ରତି ଏତେ ଦୟା ତେବେ ମୋର ଗୋଟିଏ ଇଚ୍ଛା ପୂରଣ କରିଦେ ।' ବାବର ଆଦେଶ କରନ୍ତୁ ବୋଲି କହି ସଲାମ କଲା । ଫକୀର ସାହେବ କହିଲେ, 'ଏ ଯେଉଁ ହିନ୍ଦୁମାନଙ୍କର ବୁତ୍‌ଖାନା (ମନ୍ଦିର) ଅଛି ତାକୁ ଭାଙ୍ଗି ସେଠାରେ ଗୋଟିଏ ମସ୍‌ଜିଦ୍ ତିଆରି କରିଦେ । ସେଇଠି ମୁଁ ଦିନକୁ ୫ଥର ନମାଜ ପଢ଼ିବ ।'

ବାବର କହିଲା, 'ସେ ବୁତ୍‌ଖାନା ଥାଉ ମୁଁ ତା' ପାଖରେ ଗୋଟିଏ ବଡିଆ ମସ୍‌ଜିଦ୍ ଗଢି ଦେଉଛି ।' ଏଥିରେ କନ୍ତୁ ଫକିର ରାଜି ହେଲେ ନାହିଁ । ସେ ମନ୍ଦିର ଭାଙ୍ଗି ସେ ସ୍ଥାନରେ ମସ୍‌ଜିଦ୍ କରିବାକୁ ବାବର ତାର ସେନାପତି ମୀର ବାକିଖାଁଙ୍କୁ ଆଦେଶ ଦେଲା । ଫଳରେ ହିନ୍ଦୁ ଜଗତର ମହାନ କୀର୍ତ୍ତି ଶ୍ରୀରାମ ମନ୍ଦିର ଭୂଲୁଣ୍ଠିତ ହେଲା ଏବଂ ସେହି ଅର୍ଦ୍ଧଭଗ୍ନ ମନ୍ଦିର ଉପରେ ଗଢି ଉଠିଲା ଏକ ମସ୍‌ଜିଦ୍ ।



ରାମ-ଜନ୍ମଭୂମି ପଛପାଖ ବାବରୀ ମସ୍‌ଜିଦ୍ ଭାଙ୍ଗିବାକୁ ଆରମ୍ଭ କଲେଣି

ବାବରର ସେହି ଐତିହାସିକ ଆଦେଶନାମାର ପ୍ରାମାଣିକ ଦଲିଲ ଏବେ ମଧ୍ୟ ଉପଲବ୍ଧ । ୧୯୩୪ ମସିହା ଜୁଲାଇ ୭ ତାରିଖର 'ମଡର୍ଣ୍ଣ ରିଭ୍ୟୁ'ରେ

ଶାସ୍ତ୍ରୀ ମୋହର ଙ୍କ ଏହି ଦଲିଲ ପ୍ରକାଶିତ ହୋଇଥିଲା । ଉକ୍ତଟି ନିମ୍ନ ପ୍ରକାରର —

ବହୁକମ୍ ଶାହନ୍‌ଶାହ ହିନ୍ଦ ମାଲକୁଲ ଜହାନ୍ ବାଦଶାହ ବାବର ହଜରତ କଲଲଶାହ କୀ ଖ୍ୱାହିଶ କେ ମୁତାବକ ଅଯୋଧ୍ୟା କେ 'ଜନ୍ମ ସ୍ଥାନ'କୋ ଶାହ କଲ୍‌କେ ମେଁ ଲେ ଲିୟା ଗୟା ଅଉର ଉସମେଁ ରଦ୍ଦୋ ବଦଲ କିୟା ଗୟା । ଯାଅହୀ ହିନ୍ଦୁଓଁ କୋ ଭି ବଜସ୍ତୁର ଉସ ଇବାଦୀ ଗାହମେଁ ଇବାଦତ (ଉପାସନା) କରନେ କୀ ଇଜାଜତ ବଖ୍‌ଶୀ ଗୟୀ ହୈ । ବାବଜୁଦ ଇସ୍‌କେ ଭୀ ବେ ଅପନୀ ହରକତେଁ । ସେ ବାଜନହୀଁ ଆ ରହେ, ଲିହାଜା ବଦଵଜେ ଇସ ହୁକୁମ ନାମେକେ ତୁମକୋ ବଇ- ଉଲଯେ ଆମ ଅଗାହ କିୟା ଜାତାହୈ କି ଅଯୋଧ୍ୟା କେ ଅନ୍ଦର ହିନ୍ଦୋସ୍ତାନ କେ କିସୀ ଭି ଗୈର-ସୁବେ କେ ବାସିନ୍ଦଗାନ କୋଇ ଭୀ ହିନ୍ଦୁ କାଫିଲେ ଦାଖିଲ ନ ହୋନେ ପାୟେଁ ବଲ୍‌କି ବାହାର ସେ ଆୟେ ହୁଏ କିସ୍ ଭୀ ଗଖ୍‌ଶ (ତୀର୍ଥ ଯାତ୍ରୀ) ପର କାରନୁନୋ କୋ ସୁବହାବ ଶକ ହୋ କି ଓ୍ୱହ ଅଯୋଧ୍ୟା ମେଁ ଘୁସନା ଚାହତା ହୈ ଉସେ ଫୌରନ୍ ଗିରଫଦାର କରକେ କୈଦଖାନେ ମେଁ ରଖାଯାୟ ଅଉର ଫର୍କ ଅଦାୟୁଗୀ ସମଝତେ ହୁଏ ବଦଉଜେ ଦରଶାହ କାରନୁନ ଓ ଅହିଲକାରୋଁ କେ ଇସ ହୁକୁମନାମେଁ କୀ ଶକ୍ତି ସେ ତାମିଲ ହୋ ।

ଶାସ୍ତ୍ରୀ ମୋହର

ବାବରଙ୍କର ଏହି ଆଦେଶନାମାରୁ ଜଣାଯାଏ ଯେ ସେ ସମୟରେ ବାବରଙ୍କ ଦ୍ୱାରା ଜନ୍ମଭୂମି ମନ୍ଦିରକୁ ଭାଙ୍ଗି ସେ ସ୍ଥାନରେ ମସ୍‌ଜିଦ୍ କରିବାଟାକୁ ସମଗ୍ର ଭାରତ ବର୍ଷର ହିନ୍ଦୁ ସମାଜ ବିରୋଧ କରୁଥିଲେ । କିମ୍ବଦନ୍ତୀ ଶୁଣାଯାଏ ଯେ ବାବରଙ୍କ ଲୋକମାନେ ଦିନସାରା ମସ୍‌ଜିଦ୍ ପାଇଁ ଯେଉଁ କାନ୍ଥ ଦେଇଥାନ୍ତି ବା ନିର୍ମାଣ କାର୍ଯ୍ୟ କରିଥାନ୍ତି ତା'ପରଦିନ ସକାଳକୁ ତାହା ଧରାଶାୟୀ ହୋଇ- ଯାଇଥାଏ । ଏହାକୁ ଲୌକିକ କାଣ୍ଡର ଚମତ୍କାରିତା ବୋଲି କୁହାଯାଏ କିନ୍ତୁ ବାସ୍ତବତା ଏହିଯେ ହିନ୍ଦୁ ସମାଜ ଏହାକୁ ବରଦାସ୍ତ ନକରି ଭାଙ୍ଗି ପକାଇ ଥାନ୍ତି । ବାବରଙ୍କର ଏହି ମସ୍‌ଜିଦ୍ ନିର୍ମାଣ କଥା ବାବରନାମାରେ ମଧ୍ୟ ଉଲ୍ଲେଖ ଅଛି ।

"ହଜରତ ଫଜଲ-ଆଇବାସ ମୋଷାଆଶିକନା କଲନଦର ସାହେବ କୋ ଟିଡ୍ବାକର ହିନ୍ଦେ ଉସିକେ ମଲବେ ସେ ଯୁହ ମସ୍‌ଜଦ୍ ତାମୀର ଙ୍କା।"

(ବାବର ନାମା ପୃ-୧୭୩)

# ସଂଘର୍ଷର କାହାଣୀ

ମୀର ବାକ ଖାଁଙ୍କୁ ଆଦେଶ ମିଳିବା ପରେ ବିଶାଳ ସେନାସହ ସେ ଜନ୍ମଭୂମି ଉପରେ ଆକ୍ରମଣ କରିବା ଆରମ୍ଭ କରିଦେଲା । ଏହି ଖବର ବିଜୁଳି ବେଗରେ ଚତୁର୍ଦ୍ଦିଗରେ ଖେଳିଗଲା ଏବଂ ଖବର ପାଇ ହିନ୍ଦୁମାନେ ଅସ୍ତ୍ରଶସ୍ତ୍ର ଧରି ଦଳ ଦଳ ହୋଇ ଅଯୋଧ୍ୟା ଆଡ଼କୁ ଛୁଟିଲେ । ଯଦ୍ୟପି ମୀର ବାକ ଖାଁ ନିକଟରେ ତୋପ ଆଦି ଥିଲା । ତଥାପି ସେ କିପରି ଘୋର ସମରର ସମ୍ମୁଖୀନ ହୋଇଥିଲା, ସେ କଥା ଐତିହାସିକ କନିଙ୍ଗ୍‌ହାମ୍‌ଙ୍କ ଭାଷାରେ—

ଅଯୋଧ୍ୟା ତୀର୍ଥକ୍ଷେତ୍ରର 'ଜନ୍ମଭୂମି' ମନ୍ଦିରକୁ ଭାଙ୍ଗିବା ସମୟରେ ହିନ୍ଦୁମାନେ ସଙ୍ଗଠିତ ଭାବରେ ମୋଗଲ ସେନାଙ୍କୁ ଆକ୍ରମଣ କଲେ । ଏହି ଯୁଦ୍ଧ ଭୀଷଣ ଭାବରେ ଅନେକ ଦିନ ପର୍ଯ୍ୟନ୍ତ ଚାଲିଲା । ଏ ଯୁଦ୍ଧରେ ହିନ୍ଦୁମାନେ ନିଜର ମନ୍ଦିରର ରକ୍ଷା ପାଇଁ ବଳିଦାନ କରିବାକୁ ଅଣ୍ଟାଭିଡ଼ି ବାହାରି ପଡ଼ିଲେ । ଏପରିକି ଏହି ଭୟଙ୍କର ଯୁଦ୍ଧରେ ଏକଲକ୍ଷ ୭୪ ହଜାର ହିନ୍ଦୁ ପ୍ରାଣ ଦେଇ ସାରିବା ପରେ ଯାଇ ମୀର ବାକ ଖାଁ ମନ୍ଦିର ଭିତରକୁ ପ୍ରବେଶ କରିପାରିଲା । କେବଳ ତୋପ ଦ୍ୱାରା ବାରୁଦ ଫୁଟାଇବା ପରେ ହିଁ ସେ ମନ୍ଦିର ଭାଙ୍ଗିବାକୁ ସଫଳ ହୋଇପାରିଲା ।

(ଲକ୍ଷ୍ନୌ ଗେଜେଟିୟର ଅଙ୍କ ୩୬ ପୃଷ୍ଠା ୩)

ଏହି ଘୋରତର ସମର ରଣାଙ୍ଗନରେ ମନ୍ଦିରର ପୂଜାରୀମାନଙ୍କଠାରୁ ଆରମ୍ଭ କରି ତୀର୍ଥଯାତ୍ରାରେ ଥିବା ରାଜାଙ୍କ ପର୍ଯ୍ୟନ୍ତ ହଜାର ହଜାର ସଂଖ୍ୟାରେ ଭକ୍ତ ବୀର ହିନ୍ଦୁ ଜନତା ଜନ୍ମଭୂମିର ରକ୍ଷା କରିବା ପାଇଁ ବଳିଦାନ ଯଜ୍ଞରେ ଆହୁତି ହୋଇଥିଲେ ।

ଉତ୍ତର ପ୍ରଦେଶର ଭିଟି ନାମକ ରାଜ୍ୟର ରାଜା ମହତାବ ସିଂ ସେ ସମୟରେ ତୀର୍ଥଯାତ୍ରାରେ ବାହାରିଥିଲେ । ଏହି ଖବର ପାଇବାମାତ୍ରେ ସସୈନ୍ୟେ ରଣାଙ୍ଗନରେ ଅବତୀର୍ଣ୍ଣ ହେଲେ । ତାଙ୍କର ସେହି ହେଲା ଅନ୍ତିମ ତୀର୍ଥଯାତ୍ରା । ଯେଉଁ ତୀର୍ଥସ୍ଥାନ ଭ୍ରମଣ କରି ପୁଣ୍ୟ ଅର୍ଜନ କରିବାକୁ ସେ ବାହାରିଥିଲେ ସେହି ତୀର୍ଥ କ୍ଷେତ୍ରର ରକ୍ଷା କରିବା ପାଇଁ ଓ ସମାଜ ପାଇଁ ନିଜକୁ ଆହୁତି ଦେଇଥିଲେ ।

ମର୍ଯ୍ୟାଦା ପୁରୁଷୋତ୍ତମ ଭଗବାନ ଶ୍ରୀରାମଚନ୍ଦ୍ରଙ୍କର ଜନ୍ମଭୂମିର ମର୍ଯ୍ୟାଦା ରକ୍ଷା କରିବା ପାଇଁ ଏହାତ କେବଳ ତାତ୍କାଳୀନ ପଦକ୍ଷେପ ମାତ୍ର ଥିଲା । ଐତିହାସିକ ବାବରର ସମୟରୁ ଯେବେଠାରୁ ଜନ୍ମଭୂମି ମନ୍ଦିର ଉପରେ ଆକ୍ରମଣ ହୋଇ ମସଜିଦ୍ ହୋଇଛି ସେହି ଦିନଠାରୁ ଆଜି ପର୍ଯ୍ୟନ୍ତ କୌଣସି ନା କୌଣସି ବୀର ପୁରୁଷଙ୍କ ନେତୃତ୍ୱରେ ଜନ୍ମଭୂମିର ଉଦ୍ଧାର ପାଇଁ ଚେଷ୍ଟା କରା-ଯାଇଛି । ସେ ସଂଘର୍ଷର ବହ୍ନି ଆଜି ପର୍ଯ୍ୟନ୍ତ ଲିଭିନାହିଁ କି ସେ କଳଙ୍କର କାଳିମା ଆଜି ପର୍ଯ୍ୟନ୍ତ ହିନ୍ଦୁ ସମାଜ ମୁହଁରୁ ପୋଛି ହୋଇ ନାହିଁ ।

ସନ ୧୫୩୦ରେ ବାବରର ମୃତ୍ୟୁ ହେଲା ଏବଂ ତା'ର ପାଞ୍ଚ ବର୍ଷ ପରେ ଫକୀର ଆବ୍‌ବାସ କଲନ୍ଦରଙ୍କର ମଧ୍ୟ ମୃତ୍ୟୁ ହେଲା । ବୈଶିଷ୍ଟ୍ୟ ଏହି ଯେ ବଶିଷ୍ଠ କୁଣ୍ଡ ନିକଟରେ ସେ ନିଜର ମଜାର କରାଇବାକୁ ଶେଷ ଇଚ୍ଛା ପ୍ରକଟ କରିଥିଲେ ଏବଂ ତାହାହିଁ ହୋଇଛି । ବଶିଷ୍ଠକୁଣ୍ଡ ନିକଟରେ ତାଙ୍କର ମଜାର ନିର୍ମାଣ ହୋଇଛି । କେବଳ ସେତିକି ନୁହେଁ ଯେଉଁ ମୂଲ୍ୟବାନ କଷଟି ପଥରରେ ଜନ୍ମଭୂମି ମନ୍ଦିର ନିର୍ମାଣ କରାଯାଇଥିଲା । ସେହି ଦୁର୍ମୂଲ୍ୟ କଷଟି ପଥର ଖଣ୍ଡେ ମଧ୍ୟ ମଜାରର ମୁଣ୍ଡ ପାଖରେ ରଖା ଯାଇଛି । ଯାହାକି ରାମଜନ୍ମଭୂମିର ଅପ-ମାନାସ୍ପଦ କଳଙ୍କ ଗାଥାକୁ ମନେ ପକାଇ ହିନ୍ଦୁ ହୃଦୟକୁ ଆହତ ଓ ଉତ୍ତେଜିତ କରୁଛି ।

ହିନ୍ଦୁ ଜାତିର ଏହି କଳଙ୍କକୁ ଲିଭାଇ ଦେବାପାଇଁ ସନ ୧୫୩୦ରେ ସ୍ୱାମୀ ମହେଶ୍ୱରାନନ୍ଦଜୀ ତାଙ୍କର ସନ୍ନ୍ୟାସୀ ଶିଷ୍ୟ ଏବଂ ଅନ୍ୟାନ୍ୟ ରାମଭକ୍ତ ମାନଙ୍କୁ ନେଇ ଜନ୍ମଭୂମି ମୁକ୍ତି ଉଦ୍ଦେଶ୍ୟରେ ଯୁଦ୍ଧଯାତ୍ରା କଲେ । ପ୍ରଥମେ ପ୍ରଥମେ ମୋଗଲ ସେନାଙ୍କୁ ସ୍ୱାମୀଜୀ ପ୍ରଚଣ୍ଡ ଭାବରେ ଆକ୍ରମଣ କରି ହଟାଇ ଦେଇଥିଲେ କିନ୍ତୁ ଶେଷରେ ନିଜର ଅନୁଯାୟୀମାନଙ୍କ ସହ ରଣାଙ୍ଗନରେ ନିଜକୁ ଆହୁତି ଦେଇଥିଲେ ।

ଏ ଅପମାନର କାଳିମା ଲିଭାଇବାକୁ ହିନ୍ଦୁ ରମଣୀ ମଧ୍ୟ ଶସ୍ତ୍ର ଧରି ରଣଚଣ୍ଡୀ ସାଜିଛନ୍ତି । ବାଦସାହ ହୁମାୟୁନର ଶାସନ କାଳରେ ହସବରର ରାଣୀ ଜୟରାଜ କୁମାରୀ ନିଜର ୩ ହଜାର ସେନା ସହ ଜନ୍ମଭୂମିକୁ ମୁକ୍ତ

କରିବା ପାଇଁ ଯୁଦ୍ଧ ଯାତ୍ରା ଆରମ୍ଭ କଲେ । ହଜାର ହଜାର ମୋଗଲ ସେନାକୁ ବୀରତ୍ୱର ସହ ନିଜ ତରବାରୀର ଧାରରେ ଆଉ ପାଟକୁ ପଠାଇ ଦେଲେ, କିନ୍ତୁ ଶେଷରେ ସେ ମଧ୍ୟ ଶ୍ରୀରାମଙ୍କ ଚରଣରେ ସେଇଠି ଆଶ୍ରୟ ନେଲେ ।

ତଥାପି ଏ ସଂଗ୍ରାମ ବନ୍ଦ ହୋଇନାହିଁ । ସତେ ଯେପରି ହିନ୍ଦୁ ସମାଜ ଜନ୍ମଭୂମିକୁ ମୁକ୍ତ ନକରିବା ପର୍ଯ୍ୟନ୍ତ ଶାନ୍ତିରେ ନିଃଶ୍ୱାସ ମାରି ପାରିବ ନାହିଁ । ଇତିହାସରେ ସାଧୁ ବୋଲାଉଥିବା ସମ୍ରାଟ ଆକବରଙ୍କ ଶାସନ କାଳରେ ମଧ୍ୟ ୨୦ଥର ଜନ୍ମଭୂମି ମୁକ୍ତିପାଇଁ ଯୁଦ୍ଧ ହୋଇଛି । କିନ୍ତୁ ମୋଗଲ ସମ୍ରାଟର ବିଶାଳ ସେନାକୁ ପରାଜିତ କରିବା ସମ୍ଭବପର ହୋଇ ପାରିନାହିଁ, ତଥାପି ସାହସ ନ ହରାଇ ବାରମ୍ବାର ଜାତିର କଳଙ୍କକୁ ଧୋଇଦେବା ପାଇଁ ହିନ୍ଦୁ ସନ୍ନ୍ୟାସୀ ଓ ବୀରମାନେ ଚେଷ୍ଟାକରି ଆସିଛନ୍ତି ।

**ସ୍ୱାମୀ ବଳରାମାଚାରୀ ଏକ ସଶସ୍ତ୍ର ସଂଗଠନ କରି ମୋଗଲଙ୍କ ସହ ଯୁଦ୍ଧ କରିଥିଲେ । ଏ ଦଳ ଦକ୍ଷିଣର କୋଏମ୍ବାଟୁରରୁ ଆସିଥିଲେ । ଆଇନ-ଇ-ଆକବରୀ ଅନୁସାରେ— ଯୁହ ଫର୍ମାନଜାରୀ କିୟା କି 'ରାମ ଜନ୍ମଭୂମି କୋ ଫିର ସେ ଲୌଟାନେ କେ ବାସ୍ତେ ବୀ ସ ଧାବେ କିଏ ଗଏ । ଅବ୍ ହୁକୁମ୍ ଶାହନ୍ ଶାହେ ହିନ୍ଦ-ଶାହ ଜଲାଲୁଦ୍ଦୀନ ଆକ୍‌ବର ରାଜା ବୀର-ବଲ ଅଉର ଟୋଡରମଲ କେ ମଶାବୀରେ ସେ ହିନ୍ଦୁ ରିୟାୟା କୀ ଦିଲ ଶିକନୀ ନ ହୋ ଇସଲିଏ ଇବାଦତ୍‌ଗାହ କେ ରୁବରୁ ଏକ ଚବୁତରା ତାମୀର (ନିର୍ମାଣ) କରାନେ ଓ ଇସପର ଏକ ଛୋଟା ରାମ ମନ୍ଦିର ଭୀ ତାମୀର କରା ଲେନେ କୀ ଇଜାଜତ୍ ଦୀ ହୈ ଅଉର ଯୁହ ହୁକ୍‌ମ ଭୀ ଦିୟା ଜାତା ହୈ କୀ ହିନ୍ଦୁ ରିୟାୟା କୀ ଇବାଦତ୍ ବଗୈର ମେଁ କୋଇ ଶଖ୍‌ସ୍ ମୁସ୍କିଲାତ୍ ନ ପୈଦା କରେ ନ ରୋକେ ।'**

ଆଲମଗିରନାମାରେ ସ୍ପଷ୍ଟ ଉଲ୍ଲେଖ ଅଛି

ସନ ୧୬୮୦ରେ ଶିଖମାନଙ୍କର ଦଶମ ଗୁରୁ ଗୁରୁଗୋବିନ୍ଦ ସିଂ ଶିଖ ସେନା, ବାବା ବୈଷ୍ଣବ ଦାସଙ୍କ ରାମାନନ୍ଦୀ ସୈନ୍ୟ ତଥା ରାଜପୁତ ସୈନ୍ୟଙ୍କୁ ସଙ୍ଗରେ ନେଇ ମୋଗଲ ସେନା ଉପରେ ଆକ୍ରମଣ କରିଥିଲେ । ଗୁରୁ ଗୋବିନ୍ଦ ସିଂ ନେତୃତ୍ୱରେ ସୈନ୍ୟ ବାହିନୀ ପ୍ରବଳ ପରାକ୍ରମ ପ୍ରଦର୍ଶନ କଲେ

ଫଳରେ ଆଉରଙ୍ଗଜେବ୍ ସୈନ୍ୟର ସରଦାର ହସମ ଅଲ୍ଲୀ ଖାଁ ଯୁଦ୍ଧରେ ହତ-ହେଲ ଏବଂ ମୋଗଲ ସେନାର ସେନାପତି ଜାଁବାଦ ଖାଁ ଉର ନଜର ବଳକା ସୈନ୍ୟଙ୍କୁ ଧର ପଳାୟନ କଲ ।

ମନ୍ଦିରେ କିଛୁକାଳ ପର୍ଯ୍ୟନ୍ତ ଜନ୍ମଭୂମି ହିନ୍ଦୁମାନଙ୍କ ହାତରେ ରହିଥିଲା ମାତ୍ର ପୁଣି ଆଉରଙ୍ଗଜେବ ଜନ୍ମଭୂମି ଉପରେ ଆକ୍ରମଣ କରିଥିଲା । ଆଲମଗିର ନାମାର ୬୩୦ ପୃଷ୍ଠାରେ ଲେଖାଅଛି ଯେ—୪ ବର୍ଷ ଚୁପ୍ ରହିବା ପରେ ସନ ୧୬୮୪ ରମଜାନର ୭ ତାରିଖ ଦିନ ଅଯୋଧ୍ୟାର ଜନ୍ମଭୂମି ଉପରେ ମୋଗଲ ସୈନ୍ୟ ଅଚାନକ ଭାବରେ ଆକ୍ରମଣ କରି ଦଶହଜାର ହିନ୍ଦୁ ବୀରଙ୍କୁ ହତ୍ୟାକରି ମନ୍ଦିରକୁ ଧ୍ୱସ୍ତ ବିଧ୍ୱସ୍ତ କରିଦେଲେ ।

**'ମୁତବାତର ଚାର ବରଷ କୀ ଖାମୋଶୀ କେ ବାଦ ରାମ-ଜାନକୀ ସାତବାଁ ତାରିଖ କେ ରୋଜ ଶାହୀ ଫୌଜ ନେ ଫିର ସେ ଅଯୋଧ୍ୟା ମେ ଯାକେ 'ଜନ୍ମଭୂମି' ପର ହମଲା ବୋଲା । ଚୁଁକି ଯହ ହମଲା ଏକା ଏକହି ହୁଆ ଥା । ଇସମେ ଦଶ ହଜାର ହିନ୍ଦୁ ହଲକ ହୁଆ । ଉସକା ଯୋ ଚବୁତରା ଥା । ଅଉର ଛୋଟାସା ବୁତ୍‌ଖାନା, ବେ ଦୋନୋ ଜମିନୋଜ କରଦିଏ ଗୟେ ଅଉର ଫିଲହାଲ ଶାହୀ ଫୌଜ କେ କମ୍‌ଜେ ମେଁ ହୈ ।"**

(ଆଲମଗିରନାମା ପୃଷ୍ଠା-୬୩୦)

## ଯୁଦ୍ଧ ପରେ ଯୁଦ୍ଧ

ଏହି ବାବରୀ ମସ୍‌ଜିଦର ରକ୍ତରଞ୍ଜିତ କାହାଣୀର ଅନ୍ତ ଏଇଠାରେ ହୋଇନାହିଁ । ବ୍ରିଟିଶ ଶାସନ ପର୍ଯ୍ୟନ୍ତ ଏହା ବିସ୍ତୃତ ହୋଇଯାଇଛି । ଭାରତ ସ୍ୱାତନ୍ତ୍ର୍ୟ ସଂଗ୍ରାମର ଠିକ ଏକବର୍ଷ ପୂର୍ବରୁ ପ୍ରଥମେ ହିନ୍ଦୁ ଜାତିର ପରାଧୀନ ରାମ ଜନ୍ମଭୂମିକୁ ସ୍ୱତନ୍ତ୍ର କରିବାକୁ ଏକ ପ୍ରାଣମୂର୍ଚ୍ଛା ଉଦ୍ୟମ ହୋଇଥିଲା । ଅଯୋଧ୍ୟାର ହନୁମାନ ଗଡ଼ର ନିର୍ମାଣ ଆଖଡାର ମହନ୍ତ ଉଦ୍ଧବ ଦାସ ୧୮୫୭ରେ ଜନ୍ମଭୂମି ଉପରେ ଆକ୍ରମଣ କରିଥିଲେ । ସେତେବେଳେ ଅବଧରେ ନବାବଙ୍କ ଶାସନ ଚାଲିଥିଲା । ବହୁତ ଦିନ ପର୍ଯ୍ୟନ୍ତ ଯୁଦ୍ଧଚାଲିଲା ।

ଲକ୍ଷ୍ନୌରେ ନବାବ ଓ୍ୱାଜିଦ ଅଲି ସାହେବଙ୍କୁ ଖବର ମିଳିଲା ସେ ସଙ୍ଗେ ସଙ୍ଗେ 'ଜଙ୍ଗ ଫୌରନ୍ ରୋକଦୋ' ବୋଲି ଆଦେଶ ପଠାଇଲେ । ଫଳରେ ଯୁଦ୍ଧ ବନ୍ଦ ହୋଇଗଲା କିନ୍ତୁ ଉଭୟ ସମ୍ପ୍ରଦାୟ ମଧ୍ୟରେ ତୁମୁଳ ଦଙ୍ଗାଗୋଳ ଆରମ୍ଭ ହୋଇଗଲା । ମଜାର, କବର ଖୋଳିଦିଆଗଲେ, ମନ୍ଦିର ମସ୍‌ଜିଦ୍ ଭଙ୍ଗାଗଲା । ମୁସଲମାନମାନଙ୍କର ଦଙ୍ଗାରେ ବହୁତ କ୍ଷୟକ୍ଷତି ହେଲା । ସେ ସମୟରେ ଅଯୋଧ୍ୟାର ରାଜା ଥିଲେ ମାନସିଂହ । ତାଙ୍କ ଉଦ୍ୟମରୁ ପୁଣି ଜନ୍ମସ୍ଥାନରେ ଚବୁତରା କରି ଛୋଟ ରାମମନ୍ଦିର କରିବାକୁ ନବାବ ଆଦେଶ ଦେଲେ । ଓ୍ୱେବର ନାମକ ଇଂରେଜ ଲେଖକଙ୍କ ଅନୁସାରେ— ଜନ୍ମଭୂମିକୁ ମୁକ୍ତ କରିବା ପାଇଁ ଗୋଟିଏ ବହୁତ ବଡ଼ ସଶସ୍ତ୍ର ଅଭିଯାନ ହୋଇଥିଲା ।

୧୮୫୭ର ପ୍ରଥମ ସ୍ୱାତନ୍ତ୍ର୍ୟ ସମର ସିପାହୀ ବିଦ୍ରୋହ ପରେ ଯେତେବେଳେ ଇଂରେଜମାନେ ବାହାଦୂର ଶାହଙ୍କୁ ବାଦଶାହ ଘୋଷଣା କଲେ ସେତେବେଳେ ବିପ୍ଳବୀ 'ଗଦର'ର ନେତା ଅମୀର ଅଲ୍ଲୀ ଅଯୋଧ୍ୟା ଏବଂ ଫୈଜାବାଦର ସମସ୍ତ ମୁସଲମାନମାନଙ୍କୁ ଏକତ୍ରିତ କରି କହିଲେ, "ହିନ୍ଦୁମାନେ ଆମସହ ମିଶି ସଂଗ୍ରାମ କରିଛନ୍ତି ତେଣୁ ଆମେ ରାମ ମନ୍ଦିର ଉପରେ ତୋଳାଇଥିବା ମସ୍‌ଜିଦ୍‌କୁ ଭାଙ୍ଗିଦେବା । ଏହାଦ୍ୱାରା ହିନ୍ଦୁ ମୁସଲମାନ ବନ୍ଧୁତ୍ୱ ବଢିବ ।" କିନ୍ତୁ ମୀର ଅଲ୍ଲୀଙ୍କ ଏଭଳି ପ୍ରସ୍ତାବକୁ ଇଂରେଜ ଶାସକ ବିରୋଧ କଲେ । କାରଣ ସେମାନେ ଜାଣିଥିଲେ ଯେ ହିନ୍ଦୁ-ମୁସଲମାନ ବନ୍ଧୁତ୍ୱ ତାଙ୍କ ନିରଙ୍କୁଶ ଶାସନ ପାଇଁ ବିପଦପୂର୍ଣ୍ଣ । ଉତ୍ତର ପ୍ରଦେଶର ସୁଲତାନପୁର ଗେଜେଟିଅରରେ ଉଲ୍ଲେଖ ଅଛି—

"ଅଯୋଧ୍ୟାର ବାବରୀ ମସ୍‌ଜିଦ୍‌କୁ ହିନ୍ଦୁମାନଙ୍କୁ ପୂଜାସ୍ଥଳୀ କରିବା ପାଇଁ ଫେରାଇଦେବା କଥା ଶୁଣି (ଇଂରେଜ) ମହଲରେ ଏକ ରୁନିଆ ପଡିଗଲା । ଆମେ ଭାବିଲୁ ଯେ ଯଦି ଏଭଳି ହେବ ତେବେ ଆମକୁ ଆମର ଗଣ୍ଠିଲି ବାନ୍ଧିବାକୁ ପଡ଼ିବ । ସେ ପରିସ୍ଥିତିରେ ଇଂରେଜମାନଙ୍କୁ ଏଠାରେ ମାରିଦିଆ ଯାଇଥାନ୍ତା । କିନ୍ତୁ ଭାଗ୍ୟକୁ ପଶା ଓଲଟିଗଲା । ଅମୀର ଅଲ୍ଲୀ ଏବଂ ତାଙ୍କ ବନ୍ଧୁ ମହନ୍ତ ରାମ ଚରଣ ଦାସଙ୍କୁ ଫାଶୀ ଦିଆଗଲା ।"

(ସୁଲତାନପୁର ଗେଜେଟିଅର ପୃଷ୍ଠା-୩୬୩)

ଏଥିରୁ ସ୍ପଷ୍ଟ ଜଣାଯାଏ ଯେ— ଅମୀର ଅଲ୍ଲୀ ଏବଂ ରାମ ଚରଣ ଦାସ ଜନ୍ମଭୂମିକୁ ହିନ୍ଦୁମାନଙ୍କୁ ହସ୍ତାନ୍ତର କରିବାକୁ ଚେଷ୍ଟା କରିଥିଲେ ଏବଂ ଇଂରେଜ ମାନଙ୍କର ଚକ୍ରାନ୍ତରେ ଶୃଙ୍ଖଳ ହୋଇ ଫାଶୀରେ ଝୁଲିଲେ ।

ମୋଗଲଙ୍କ ପରେ ଇଂରେଜ ଦିଲ୍ଲୀର ଶାସକ ହେଲେ । ନିଜର ଗଦିକୁ ଦୃଢ଼ ରଖିବାପାଇଁ ସେମାନେ ହିନ୍ଦୁ ମୁସଲମାନ ଉଭୟ ମଧ୍ୟରେ ମିଳାମିଶାକୁ ପସନ୍ଦ କରୁନଥିଲେ ଅଧିକନ୍ତୁ ପରସ୍ପର ମଧ୍ୟରେ ଦଙ୍ଗା ଲାଗିରହୁ ଏହା ତାଙ୍କର ଉଦ୍ଦେଶ୍ୟ ଥିଲା । ତେଣୁ ନବାବ୍ ଓ୍ୱାଜିଦ୍ ଅଲି ଶାହଙ୍କ ଅମଳରୁ ହିନ୍ଦୁମାନେ ଯେଉଁ ମନ୍ଦିର କରି ପୂଜା କରିବାର ଅଧିକାର ପାଇଥିଲେ ଇଂରେଜମାନେ ସେ ଅଧିକାର ଉଠାଇଦେଲେ ଫଳରେ ପୁଣି ୧୯୧୨ ରେ ହିନ୍ଦୁମାନେ ଜନ୍ମଭୂମିକୁ ମୁକ୍ତ କରିବାପାଇଁ ଲଢେଇ ଆରମ୍ଭ କରିଦେଲେ । ଭୟାନକ ରକ୍ତପାତ ହେଲା । ଅନେକ ବ୍ୟକ୍ତି ମଲେ । ଅଯୋଧ୍ୟାରେ ଦଙ୍ଗା ପୁଣି ଆରମ୍ଭ ହୋଇଗଲା । ଇଂରେଜମାନେ ମୁସଲମାନମାନଙ୍କୁ ସମର୍ଥନ କଲେ ଫଳରେ ହିନ୍ଦୁମାନଙ୍କର ଚେଷ୍ଟା ବ୍ୟର୍ଥ ହେଲା । ଏହି ସଂଗ୍ରାମରେ ଅଯୋଧ୍ୟାର 'ନିର୍ମୋହିଆଖଡ଼ା' ଅଗ୍ରସର ଥିଲେ । ଫୈଜାବାଦ ଗେଜେଟିଅର ଅନୁସାରେ— 'ଜନ୍ମଭୂମିରେ ଯେଉଁ ପୁରା-ତନ ମନ୍ଦିର ଥିଲା ତାର କିଛି ଭଗ୍ନାବଶେଷ ବର୍ତ୍ତମାନ ମଧ୍ୟ ନିର୍ମୋହି ଆଖଡ଼ା ଅଧିକାରରେ ଅଛି । (ଫୈଜାବାଦ ଗେଜେଟିଅର ପୃଷ୍ଠା-୬୨) ଦିଲ୍ଲୀ ଗଭର୍ଣ୍ଣମେଣ୍ଟ ଗେଜେଟିଅର୍‌ରେ ମଧ୍ୟ ଏ ବିଷୟ ଲେଖାଅଛି ।

"ଏହା ବହୁ ଶ୍ରୁତ ଯେ ୧୮୫୭ ପୂର୍ବରୁ ହିନ୍ଦୁ ମୁସଲମାନ ଉଭୟେ ଅଯୋଧ୍ୟାର ଜନ୍ମଭୂମିରେ ନିଜ ନିଜର ଉପାସନା କରୁଥିଲେ । କିନ୍ତୁ ଗଦର ସମୟରେ ସେ ସ୍ଥାନକୁ ସରକାର ଅଧିକାର କରିନେଲେ ଏବଂ ହିନ୍ଦୁମାନଙ୍କୁ ଭିତରକୁ ଯିବାକୁ ମନାକରି ଦିଆଗଲା । ସେହି ସମୟରୁ ହିନ୍ଦୁମାନେ ମନ୍ଦିର ଅର୍ଥାତ୍ ମସଜିଦ୍ ବାହାର ଚବୁତରାରେ ପୂଜା କରୁଛନ୍ତି । (ପୃଷ୍ଠା-୧୭୪)"

ପୁଣିଥରେ ୧୯୩୦ ମସିହାରେ ଜନ୍ମଭୂମିକୁ ମୁକ୍ତ କରିବା ପାଇଁ ସଂଘର୍ଷ ହେଲା ଏବଂ ଏଥିରେ ହିନ୍ଦୁମାନେ ବାବରୀ ମସଜିଦ୍‌ର ନୂଆ ପ୍ରାଚୀରକୁ ଭାଙ୍ଗି ଦେଲେ । ସଂଗ୍ରାମ ଖୁବ୍ ଘୋର ଚାଲିଲା । ଏହାକୁ ଦମନ କରିବା ପାଇଁ ଇଂରେଜ ମାନେ ସୈନ୍ୟ ପଠାଇଲେ, କର୍ଫ୍ୟୁ ଲଗିଲା, ଲୋକଙ୍କୁ ଗିରଫ କରାଗଲା କିନ୍ତୁ ତଥାପି ସରଯୂ ନଦୀ ଏବଂ ଅଯୋଧ୍ୟା ରକ୍ତରଞ୍ଜିତ ହୋଇଗଲା । ଏହି

ସଂଗ୍ରାମରେ ଅନେକ ହିନ୍ଦୁଙ୍କୁ ଜେଲ ଦିଆଯାଇଥିଲା— ସେମାନଙ୍କର ସମସ୍ତଙ୍କର ସୂଚୀ ମିଳୁ ନାହିଁ—

ସର୍ବଶ୍ରୀ ମହନ୍ତ ରାମ କିଶୋର ଦାସ (ଜନ୍ମସ୍ଥାନ),ମହନ୍ତ ରଘୁବୀର ପ୍ରସାଦ (ବଡ଼ସ୍ଥାନ), ବାବା ମଙ୍ଗଲ ଦାସ (ହନୁମାନଗଡ଼), ମହନ୍ତ ରାମ ଟହଲ ଦାସ, ବାବା ସିଆରାମ ଦାସ, ବାବା ଶତ୍ରୁଘ୍ନ ଦାସ, ତପସ୍ୱୀଙ୍କ ଛାଉଣିର ଅନେକ ଅଧିକାରୀ ତଥା ବାବା ଯମୁନା ଦାସ ଆଦି ।

କମିସନର ଜେ. ପି. ନେକଲସନ୍ ହିନ୍ଦୁମାନଙ୍କଠାରୁ ଯୋରିମାନା କରି ବହୁ ଅର୍ଥ ଆଦାୟ କଲେ ଯେଉଁ ଅର୍ଥରେ ମସ୍‌ଜିଦ୍‌ର ଭଙ୍ଗା କାନ୍ଥର ନିର୍ମାଣ ପୁଣି ହୋଇପାରିବ । ଏହି ଦମନଲୀଳା ହେବା ପରେ ମଧ୍ୟ ମସଜିଦ୍ ମଧ୍ୟସ୍ଥ ଚବୁତରା ଉପରେ ହିନ୍ଦୁମାନଙ୍କର ଅଧିକାର ଅକ୍ଷୁଣ୍ଣ ରହିଲା ।

## ଶ୍ରୀରାମାୟଣ ମହାସଭା

ଏହିପରି ଭାବରେ ରାମ ଜନ୍ମଭୂମି ଅଯୋଧ୍ୟା ଅବଧପୁରୀ (ଯେଉଁଠାରେ କାହାରି ବଧ ହୁଏ ନାହିଁ) ଏକ ଯୁଦ୍ଧ ମାଳକାର କ୍ଷେତ୍ର ହୋଇରହିଲା । ଅନେକ ରାମଭକ୍ତ ସାଧୁ-ସନ୍ଥଙ୍କର ମଠ ସେନା ଛାଉଣି ବା ଆଖଡ଼ାରେ ପରିଣତ ହେଲା ।

ଦିଗମ୍ବର ଆଖଡ଼ାର ମହନ୍ତ ଶ୍ରୀ ଶ୍ରୀ ରାମଚନ୍ଦ୍ର ଦାସ ପରମହଂସ ୧୯୪୩ ମସିହାରେ 'ଶ୍ରୀ ରାମାୟଣ ମହାସଭା'ର ସ୍ଥାପନ କରି ଜନ୍ମଭୂମି ମୁକ୍ତ କରିବାର ପରମ୍ପରାକୁ ଜୀବନ୍ତ ରଖିଲେ । ମହାସଭାର ଅଧ୍ୟକ୍ଷ ମହନ୍ତ ରାମପଦାର୍ଥ ଦାସ ଏବଂ ସମ୍ପାଦକ ମହନ୍ତ ରାମଚନ୍ଦ୍ର ଦାସ ପରମହଂସ ରହିଲେ । ହନୁମାନ ଜୟନ୍ତୀରେ ହନୁମାନଗଡ଼ରେ ପ୍ରଥମ ସମ୍ମେଳନରେ ଜନ୍ମଭୂମି ମୁକ୍ତ କରିବା ପାଇଁ ପ୍ରସ୍ତାବ ଗ୍ରହଣ କରାଗଲା ଏବଂ ଜନ୍ମସ୍ଥଳୀରେ ୧୧୦୧ ଅଖଣ୍ଡ ରାମାୟଣ ପାଠ କରିବାର ଯୋଜନା କରାଗଲା ଏବଂ ୧୯୪୯ ମସିହାରେ ଜନ୍ମସ୍ଥଳୀରେ ରାମାୟଣ ପାଠ ଆରମ୍ଭ ହେଲା ।

## ୧୯୪୯ର ଚମତ୍କାର

ରାମାୟଣ ପାଠ ଶୁଣିବା ପାଇଁ ହଜାର ହଜାର ଜନସାଧାରଣଙ୍କର ସମାବେଶ ହେଲା । ସେ ସମୟରେ ଜିଲ୍ଲା କଲେକ୍ଟର ଶ୍ରୀ କୃଷ୍ଣକୁମାର କରୁଣାକରନ୍ ନାୟାର ଏବଂ ସିଟି ମାଜିଷ୍ଟ୍ରେଟ ଶ୍ରୀ ଗୁରୁଦତ୍ତ ସିଂ ଥିଲେ । ଶ୍ରୀ ଗୁରୁଦତ୍ତସିଂ ନିଜେ ରାମାୟଣ ପାଠରେ ଉପସ୍ଥିତ ରହୁଥିଲେ । କିଛି ମୁସଲମାନ ମଧ୍ୟ ଶ୍ରଦ୍ଧାରେ

ଘଗ ନେଉଥିଲେ । ପାଠ ସମାପ୍ତି ଦିନ ଆସିଗଲା, ବହୁଲୋକ ଏକତ୍ରିତ ହେଲେ ମୁସଲମାନମାନଙ୍କର ଦରଖାସ୍ତ ଫଳରେ ସରକାରଙ୍କ ତରଫରୁ ପୋଲିସ ପହରା ଲଗାଇ ଦିଆଗଲା ।

ପହରାବାଲା ଦେଖିଲା ଯେ, 'ଏକ ଉଜ୍ଜ୍ୱଳ ଆଲୋକ ଭିତରେ ସେ ସ୍ଥାନଟି ଉଦ୍‌ଭାସିତ ହୋଇ ଉଠୁଛି ଏବଂ ମୁହଁରେ ଖାରଭର ଅପୂର୍ବ ଜ୍ୟୋତି ଫୁଟାଇ ଗୋଟିଏ ୪।୫ ବର୍ଷର ବାଳକ ସେଠାରେ ଆନନ୍ଦରେ ନାଚୁଛି, ଏପରି ସୁନ୍ଦର ବାଳକ ସେ ଜୀବନରେ କେବେ କେଉଁଠାରେ ଦେଖି ନଥିଲା । ଏ ଦୃଶ୍ୟ ଦେଖି ସେ ସଂଜ୍ଞାହୀନ ହୋଇ ପଡ଼ିଲା । ସଂଜ୍ଞା ଫେରିବା ପରେ ସେ ଦେଖିଲା ଯେ ମୁଖ୍ୟ ଫାଟକର ତାଲା ଖୋଲିଯାଇ ଭୂମିରେ ପଡ଼ିଛି ଏବଂ ମସ୍‌ଜିଦ୍ (ମନ୍ଦିର) ଭିତରେ ହିନ୍ଦୁମାନଙ୍କର ପ୍ରବଳ ଭିଡ଼ଲାଗିଯାଇଛି ।

ଏ ଘଟଣା ଉତ୍ତର ପ୍ରଦେଶ ସରକାରଙ୍କର ବିଶେଷ ଦୃଷ୍ଟି ଆକର୍ଷଣ କଲା । ରାଜ୍ୟ ପୋଲିସ୍ ଇନସ୍‌ପେକ୍ଟର ଜେନେରାଲ ଶ୍ରୀଯୁକ୍ତ ସର୍ଦ୍ଦାର ସିଂ ଏ ଘଟଣାର ଅନୁସନ୍ଧାନ ପାଇଁ ଅଯୋଧ୍ୟାରେ ଆସି ପହଞ୍ଚିଲେ । ଉପସ୍ଥିତ ଜନତାକୁ ଦେଖି ସେ ଆଶ୍ଚର୍ଯ୍ୟ ଚକିତ ହୋଇ ରହିଗଲେ । ଭାରତୀୟ ଦଣ୍ଡବିଧି ଆଇନ ୧୪୫ ଧାରାରେ ସରକାରଙ୍କ ନିର୍ଦ୍ଦେଶକ୍ରମେ ଉକ୍ତ ଅନୁଷ୍ଠାନ ଓ ସେ ଅଞ୍ଚଳକୁ ସରକାର ନିଜ ଅଧୀନକୁ ନେଇଗଲେ । କିନ୍ତୁ ପ୍ରକଟିତ ଶ୍ରୀ ରାମଲଲାଙ୍କର ପୂଜା ଅର୍ଚ୍ଚନା ହିନ୍ଦୁରୀତିରେ କରିବାକୁ ଅନୁମତି ଦିଆଗଲା ଏବଂ ସର୍ବସାଧାରଣଙ୍କର ପ୍ରବେଶ ବନ୍ଦ କରି ଦିଆଗଲା ।

୧୯୫୦ ଜାନୁଆରୀ ୧୦ ତାରିଖରେ ଶ୍ରୀ ଠାକୁର ଗୋପାଳ ସିଂ ଫୈଜାବାଦର ସବ୍‌ଜଜ୍‌ଙ୍କ ଅଦାଲତରେ ଏକ ଦେଓ୍ୱାନୀ ମକଦ୍ଦମା ଦାୟର କଲେ, ରାମ-ଜନ୍ମଭୂମି ଯାହାକୁ ବାବରୀ ମସଜିଦ୍ ବୋଲି କୁହାଯାଉଛି, ସେଠାରେ ଭଗବାନ ରାମଙ୍କ ମୂର୍ତ୍ତି ସ୍ଥାପନ କରାଯାଇଛି ଏବଂ ପୂଜା ଅର୍ଚ୍ଚନା ଚାଲିଛି ଏଥିପାଇଁ ସରକାର ଅନୁମତି ଦେଇଛନ୍ତି କିନ୍ତୁ ମୁସଲମାନ ମାନେ ଦୀର୍ଘ ୧୩ ବର୍ଷ ହେଲା ଏହା ମଧ୍ୟକୁ ପ୍ରବେଶ କରୁନାହାଁନ୍ତି । ଏପରିକି ସେଠାକୁ ନମାଜ କରିବାକୁ ସରକାର ପୋଲିସର ସୁରକ୍ଷାରେ ଆସିବାକୁ କହିଲେ ମଧ୍ୟ ସେଠାରେ ବୁତ୍ (ମୂର୍ତ୍ତି) ଅଛି ବୋଲି ଆସୁନାହାଁନ୍ତି । ତେଣୁ ଭାରତୀୟ ଆଇନ ଅନୁସାରେ ୧୨ ବର୍ଷ କୌଣସି ସ୍ଥାନକୁ ନ ଆସିଲେ ସେ ସ୍ଥାନ ଉପରେ ତାଙ୍କର କୌଣସି ଦଖଲ ନାହିଁ । ମକଦ୍ଦମାରେ ହିନ୍ଦୁମାନଙ୍କର ବିଜୟ ହେଲା ତେଣୁ ମୁସଲମାନମାନେ ଏ ମକଦ୍ଦମାକୁ ଆଲିଗଡ଼କୁ ନେଇଗଲେ । କିନ୍ତୁ ଏହା ଯେତେବେଳେ ଆଲିଗଡ଼ର

ପରିସର ବାହାରେ ଥିବାରୁ ପୁଣି ଫୈଜାବାଦ ଫେରି ଆସିଲା । ସେତେବେଳେ ମୁସଲମାନମାନେ ମକଦ୍ଦମା ଚଳାଇବା ପାଇଁ ଦିଲ୍ଲୀ ଗଲେ ଦିଲ୍ଲୀରେ ତତ୍‌କାଳୀନ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁ ତଥା ଶିକ୍ଷାମନ୍ତ୍ରୀ ମୌଲାନା ଆଜାଦ୍‌ଙ୍କ ଠାରେ ଆପତ୍ତି ଅଭିଯୋଗ କରିବାରୁ ସେ ରାଜ୍ୟ ସରକାରଙ୍କୁ ସେ ମନ୍ଦିର ମଧ୍ୟରୁ ଦେବ ମୂର୍ତ୍ତିଙ୍କୁ ହଟାଇ ଦେବାକୁ ନିର୍ଦ୍ଦେଶ ଦେଲେ ଏବଂ ସରକାର ଏ ଆଦେଶକୁ କାର୍ଯ୍ୟକାରୀ କରିବା ପାଇଁ ସଙ୍ଗେ ସଙ୍ଗେ ଜିଲ୍ଲା କଲେକ୍ଟରଙ୍କୁ ନିର୍ଦ୍ଦେଶ ଦେଲେ କିନ୍ତୁ କଲେକ୍ଟର ଶ୍ରୀଯୁକ୍ତ କେ. କେ. ନାୟାର କେନ୍ଦ୍ର ତଥା ରାଜ୍ୟ ସରକାରଙ୍କର ଏହିଭଳି ଅଯୌକ୍ତିକ ଆଦେଶକୁ ପ୍ରତ୍ୟାଖାନ କଲେ । ଏହି ସମୟରେ ମଧ୍ୟ ଏ ମକଦ୍ଦମା ନ୍ୟାୟାଳୟରେ ବିଚାରାଧୀନ ଥିଲା । ଏଣୁ ଏ ବିଷୟରେ ନିର୍ଦ୍ଦେଶ ଦେବାପାଇଁ କେନ୍ଦ୍ର ତଥା ରାଜ୍ୟ ସରକାରଙ୍କର କୌଣସି ନୈତିକ ଅଧିକାର ନଥିଲା । କିନ୍ତୁ ବାରମ୍ବାର କେନ୍ଦ୍ର ଓ ରାଜ୍ୟର ଅନୈତିକ ଚାପ ପଡ଼ିବାରୁ ଜିଲ୍ଲାପାଳ ଶ୍ରୀଯୁକ୍ତ ନାୟାର ଏବଂ ସିଟି ମାଜିଷ୍ଟ୍ରେଟ ଶ୍ରୀଯୁକ୍ତ ଗୁରୁଦତ୍ତ ସିଂ ନିଜ ନିଜ ପଦବୀରୁ ଇସ୍ତଫା ଦେଲେ ।

ପରେ କେଶ ଚାଲିଲା । ସରକାରଙ୍କୁ ୮୦ ଦଫାରେ ପକାଇବା ପାଇଁ ମହନ୍ତ ରାମଚନ୍ଦ୍ର ଦାସ ପରମହଂସ ଅର୍ଜି ଦାଖଲ କରି କହିଲେ ଯେ ମୁଁ ବହୁ-ବର୍ଷ ହେଲା ଏହି ଭବନରେ ଶ୍ରୀରାମଙ୍କୁ ଦର୍ଶନ କରିବାକୁ ଆସୁଛି ଏବେ ସରକାର ସେଠାରେ ପୋଲିସ ରଖି ଦେଇଛନ୍ତି । ମୋତେ ଭୟ ଲାଗୁଛି ଯେ ମୁସଲମାନ ପୋଷକ ସରକାର ଏ ମୂର୍ତ୍ତି ଉଠାଇ କରି ନେଇଯିବ । ଅନେକ ତର୍କ ପରେ ସ୍ଥଗିତାଦେଶ ହୋଇଗଲା ଏବଂ ସେ ସ୍ଥାନର ୨୦୦ ଗଜ ପରିସୀମା ମଧ୍ୟକୁ ମୁସଲମାନ ମାନଙ୍କ ପ୍ରବେଶ ବନ୍ଦ କରାଗଲା ।

ଏହି ସ୍ଥଗିତାଦେଶ ବିରୁଦ୍ଧରେ ମୁସଲମାନମାନେ ହାଇକୋର୍ଟରେ ଅପିଲ କଲେ, କିନ୍ତୁ ହାଇକୋର୍ଟ ମଧ୍ୟ ସ୍ଥଗିତାଦେଶକୁ କାୟମ ରଖିଲେ । ଏହା ପୂର୍ବରୁ ମନ୍ଦିରକୁ ୧୪୫ ଅନ୍ତର୍ଗତ ସ୍ଥାନୀୟ ନଗରପାଳିକା ଚେୟାରମ୍ୟାନଙ୍କୁ ତତ୍ତ୍ୱାବଧାରକ ଭାବେ ନିଯୁକ୍ତ କରାଯାଇଥିଲା ।

କିନ୍ତୁ କେଶ୍ ଚାଲିବା ୧୦।୧୧ ବର୍ଷ ହୋଇଯିବାରୁ ମୁସଲମାନମାନେ **'ମୁସଲିମ ସୁନ୍ନି ବୋର୍ଡ'** ତରଫରୁ ଅଯୋଧ୍ୟାର ଅନେକ ମହନ୍ତଙ୍କୁ ପ୍ରତିବାଦୀ କରି କେଶ୍ ଦେଲେ । ମୂଳକେଶକୁ ପଛରେ ପକାଇ ଦେଇ ସେମାନଙ୍କ କେଶ୍ ଚାଲିଲା କିନ୍ତୁ ଆଜି ୩୬-୩୭ ବର୍ଷ ହୋଇଯାଇଥିଲେ ମଧ୍ୟ ଆଜି ପର୍ଯ୍ୟନ୍ତ ସେ କେଶ୍ ସରିନାହିଁ ।

ରାମାୟଣ ସମିତି ଗଠିତ ହେବା ପରେ 'ରାମଜନ୍ମଭୂମି ସେବା ସମିତି' ତିଆରି କରାଗଲା କିନ୍ତୁ ତାହା ମଧ୍ୟ କିଛି କାର୍ଯ୍ୟ ନହୋଇ ପାରିବାରୁ ଭାଙ୍ଗିଗଲା ।

ଏହାପରେ ଅନେକ ସନ୍ଥ ଏ ଧାରା ପ୍ରବାହକୁ ଜନ୍ମଭୂମିକୁ ମୁକ୍ତ ନକରିବା ପର୍ଯ୍ୟନ୍ତ ଚଳାଇ ରଖିଛନ୍ତି । ମହନ୍ତ ରାମଚନ୍ଦ୍ର ଦାସ ପରମହଂସ ଆଜି ମଧ୍ୟ ସଂଗ୍ରାମ ରତ ଅଛନ୍ତି ।

୧୯୫୧ ଜୁଲାଇ ୧ ତାରିଖରେ ଲକ୍ଷ୍ନୌରୁ ପ୍ରକାଶିତ ସ୍ୱଦେଶ ପତ୍ରିକାରେ ବିଶିଷ୍ଟ ମୁସଲମାନ ନେତା ଶ୍ରୀ ରିୟାଜ୍ ଅହମ୍ମଦ ଆନସାରୀ ଜନ୍ମଭୂମିକୁ ହିନ୍ଦୁମାନଙ୍କର ହୃଦୟ ବୋଲି ବର୍ଣ୍ଣନା କରି ଏହାକୁ ହିନ୍ଦୁମାନଙ୍କୁ ଫେରାଇ ଦେବାକୁ ଦାବୀ କରିଥିଲେ । ସେ କହିଲେ ଯେ- ମୋଗଲ ସାମ୍ରାଜ୍ୟଠାରୁ ଆଜି ପର୍ଯ୍ୟନ୍ତ ଜନ୍ମଭୂମିକୁ କେନ୍ଦ୍ର କରି ୭୩ ଥର ସଂଘର୍ଷ ହେଲାଣି । କିନ୍ତୁ ଏହା ସ୍ପଷ୍ଟ ଯେ ଜନ୍ମଭୂମି ହିନ୍ଦୁମାନଙ୍କର, କାରଣ ଏଥିରେ ଥିବା ଖମ୍ବ ଗୁଡ଼ିକରେ ହିନ୍ଦୁ ଦେବାଦେବୀଙ୍କର ମୂର୍ତ୍ତିମାନ ରହିଅଛି । ଶ୍ରୀ ଆନସାରୀ ତାଙ୍କର ବକ୍ତବ୍ୟରେ ଆହୁରି କହିଲେ ଯେ ମୁସଲମାନମାନଙ୍କୁ ସାରା ଜୀବନ ଏ ଦେଶରେ ରହିବାକୁ ହେବ ତେଣୁ ହିନ୍ଦୁମାନଙ୍କସହ ବୈରଭାବ ବଢାଇ ସେମାନେ ଶାନ୍ତିରେ ଏଠାରେ ରହି ପାରିବେ ନାହିଁ ।

କିନ୍ତୁ ଶ୍ରୀ ଆନ୍‌ସାରୀଙ୍କ ଏହି ଅନୁରୋଧକୁ ମଧ୍ୟ ପ୍ରତ୍ୟାଖ୍ୟାନ କରାଗଲା । ସରକାର ଏଥିପ୍ରତି କର୍ଣ୍ଣପାତ କଲେନାହିଁ ।

ଅଗଷ୍ଟ ୫, ୧୯୫୧ରେ କିଛି ସଂପ୍ରଦାୟିକ ମୁସଲମାନ, ପାକିସ୍ଥାନ ପ୍ରରୋଚନାରେ, ଭାରତର ଶାନ୍ତିଭଙ୍ଗ କରିବାକୁ ଜନ୍ମଭୂମିରେ ଜବରଦସ୍ତ ନମାଜ ପଢିବାକୁ ପ୍ରୟାସ କରିଥିଲେ ବୋଲି ଲକ୍ଷ୍ନୌରୁ ପ୍ରକାଶିତ ସ୍ୱଦେଶରେ ପ୍ରକାଶିତ ହୋଇଥିଲା ।

ଏହିପରି ଭାବରେ ଖ୍ରୀଷ୍ଟାବ୍ଦ ୧୫୨୮ ରେ ଶ୍ରୀରାମ ଜନ୍ମଭୂମି ମନ୍ଦିର ବାବରୀ ମସ୍‌ଜିଦ୍‌ରେ ପରିଣତ ହେବା ପରଠାରୁ ଆଜି ପର୍ଯ୍ୟନ୍ତ ମର୍ଯ୍ୟାଦା ପୁରୁଷୋତ୍ତମ ଶ୍ରୀରାମଚନ୍ଦ୍ରଙ୍କର ପବିତ୍ର ଜନ୍ମଭୂମି ଅବଧପୁରୀରେ ନରମେଧ ଯଜ୍ଞର ସମାପ୍ତି ଘଟିନାହିଁ । ରକ୍ତାକ୍ତ ସଂଘର୍ଷର ଚକ୍ର ଚାଲିଆସିଛି ।

## ବର୍ତ୍ତମାନର ସ୍ଥିତି

ସମ୍ରାଟ ବିକ୍ରମାଦିତ୍ୟଙ୍କ ଦ୍ୱାରା ନିର୍ମିତ କଷଟି ପଥରର ଏହି ସୁରମ୍ୟ ମନ୍ଦିର ହିନ୍ଦୁମାନଙ୍କର ପ୍ରାଣକେନ୍ଦ୍ର ଆଜି ହିନ୍ଦୁ ସମାଜ ପ୍ରତି ଏକ ଅପମାନର ସୌଧ ଭଳି ଠିଆହୋଇ ରହିଛି । ୮୪ଟି କଷଟି ପଥରର ଖମ୍ବ ମଧ୍ୟରୁ ଆଜି ସେଠାରେ ମାତ୍ର ୧୨ଟି ଅଛି । ବାବରୀ ମସ୍‌ଜିଦ୍ ମଧ୍ୟରେ 'ସୀତା ରୋଷାଇ ଚଉତରା'କୁ ଦେଖିଲେ ହୃଦୟ ବିଦୀର୍ଣ୍ଣ ହୋଇଯାଉଛି । କଷଟିର ୧୨ଟି ଖମ୍ବ ମଧ୍ୟରୁ କୃଷ୍ଣ ଆଦି ଅବତାରଙ୍କ ମୂର୍ତ୍ତି ବ୍ୟାକୁଳ ନୟନରେ ହିନ୍ଦୁ ସମାଜକୁ ଚାହିଁଛନ୍ତି । ହନୁମନ୍ତ ଦ୍ୱାରର ପୂର୍ବପାର୍ଶ୍ୱ କାନ୍ଥରେ ଖୋଦିତ ହୋଇଥିବା ବରାହ ପ୍ରତିମା ଆଜି ହିନ୍ଦୁ ପରାକ୍ରମକୁ ଆହ୍ୱାନ ଦେଉଛନ୍ତି । ମସଜିଦ୍‌ର ମୁଖ୍ୟ ଦ୍ୱାରର ପ୍ରାଚୀନ ଶିଳାଖଣ୍ଡ ଉପରେ ଖୋଦିତ 'ଶ୍ରୀରାମ ଜନ୍ମଭୂମି' ଅକ୍ଷର ଗୁଡ଼ିକ ହିନ୍ଦୁ ମନରେ କ୍ଷୋଭ ଏବଂ କ୍ରୋଧ ଉତ୍ପନ୍ନ କରୁଛି । ମନ୍ଦିରରେ ଲାଗିଥିବା ଚନ୍ଦନ କାଠସବୁ ଆଜି ମସ୍‌ଜିଦ୍‌ରେ ଶୋଭା ପାଉଛି । କୋଟି କୋଟି ହିନ୍ଦୁଙ୍କ ଆରାଧ୍ୟ ଦେବତା ଆଜି ତାଲା ବନ୍ଦହୋଇ ନିଜ ଜନ୍ମଭୂମିରେ ରହିଛନ୍ତି କଂସ ବନ୍ଦୀଘର ପହରା ଭଳି ପୋଲିସର କଡ଼ା ପହରା ଭିତରେ । ଭକ୍ତ ଓ ଭଗବାନ ମଧ୍ୟରେ ବିରାଟ ପ୍ରାଚୀର, ତାଲା ପୋଲିସ ରହିଛନ୍ତି ।

ପବିତ୍ର ପାବନ ଅଯୋଧ୍ୟାରେ ଯାହା ସ୍ୱର୍ଣ୍ଣଦ୍ୱାର ଥିଲା ତାହାଆଜି 'ସୈବ-ବାଡ଼ା' ରାମକୋଟକୁ 'ବେଗମପୁରା' ମଣିପର୍ବତକୁ 'କାଜ୍ଜୀପୁର' ବଶିଷ୍ଠ କୁଣ୍ଡକୁ 'କଂଙ୍କଆନା' ଏବଂ ରାମଘାଟକୁ 'ରହିମାବାଦ' ଋଣମୋଚନ ଘାଟକୁ 'ଫକୀର-ଓ୍ୱାଡା'ପ୍ରମୋଦବନକୁ 'ବାଗହିଜରତ' ନାମରେ ନାମିତ କରାଯାଇଛି । ଯାହା କେବେ ଶୃଙ୍ଗାରହାଟ ନାମରେ ଅଭିହିତ ଥିଲା, ତାହା ଆଜି 'ନୈଗଞ୍ଜ'ରେ ପରିଣତ ହୋଇଛି । ସମଗ୍ର ଅବଧପୁରୀର ଚେହେରା ବଦଳି ଯାଇଛି ।

## ଶ୍ରୀରାମ ଜନ୍ମଭୂମି ମୁକ୍ତି ଯଜ୍ଞ

ସତତ ସଂଘର୍ଷ, ବଳିଦାନ, ଆଇନଗତ ପଦକ୍ଷେପ ଆଦି ପରେ ମଧ୍ୟ ସ୍ୱାଧୀନ ଭାରତବର୍ଷରେ ଯେଉଁଠାରେ କି ଗଣତନ୍ତ୍ରର ଶାସନ ଚାଲିଛି, ଯେଉଁ ଦେଶକୁ ରାମରାଜ୍ୟ କରିବା ପାଇଁ ଜାତିର ଜନକ ମହାତ୍ମାଗାନ୍ଧୀ ସ୍ୱପ୍ନ ଦେଖୁଥିଲେ, ଯେଉଁ ଜାତିର ଜନକଙ୍କର ମୁଖରେ ଧ୍ୱନିତ 'ରଘୁପତି

ବିଜୟ ରଜାବିମ'ର ଧ୍ୱନି ଶୁଣାଯାଉଥିଲ, ସେହି ଗଣତନ୍ତ୍ର ରାଷ୍ଟ୍ରର ଶତକଡ଼ା ୮୫ ଭାଗ ଜନସଂଖ୍ୟା ଥିବା ହିନ୍ଦୁ ସମାଜର ଆରାଧ୍ୟ ଭଗବାନ ଶ୍ରୀରାମ ଏବେବି ମୁକ୍ତ ହୋଇପାରି ନାହାନ୍ତି । ଅଧିକନ୍ତୁ ନିଜ ଜନ୍ମସ୍ଥାନରେ ନିଜର ଭକ୍ତମାନଙ୍କ ପ୍ରାଚୁର୍ଯ୍ୟ ମଧ୍ୟରେ ବନ୍ଦୀ ହୋଇ ରହିଛନ୍ତି । ଏହା ଏ ଜାତି ପକ୍ଷରେ ଦୁଃଖ, କ୍ଷୋଭ, ଲଜ୍ଜା ଓ ଅପମାନର କଥା ହୋଇ ରହିଛି ।

କିନ୍ତୁ ଜନ୍ମଭୂମିକୁ ମୁକ୍ତ କରିବା ପାଇଁ ଯେଉଁ ଅଖଣ୍ଡ ପ୍ରୟାସ ଗତ ଶତାବ୍ଦୀ ଶତାବ୍ଦୀ ଧରି ଚାଲିଆସିଛି ସେହି ଧାରାକୁ ଆଗକୁ ବଢ଼ାଇ ଯେଉଁ ଭକ୍ତ ବୀରମାନେ ପବିତ୍ର ଜନ୍ମଭୂମିକୁ ମୁକ୍ତ କରିବାପାଇଁ ନିଜର ଆତ୍ମ ବଳିଦାନ କରି-ଛନ୍ତି ସେହିମାନଙ୍କର ସେହି ପ୍ରତିଜ୍ଞାକୁ ପୂରଣ କରିବାପାଇଁ ବିଶ୍ୱହିନ୍ଦୁ ପରିଷଦ ତରଫରୁ ଧର୍ମସ୍ଥାନ ମୁକ୍ତ ସମିତି ନାମକ ସଂସ୍ଥା ଗଠନ କରାଯାଇ ଅଯୋଧ୍ୟାର ଶ୍ରୀରାମ ଜନ୍ମଭୂମି ମଥୁରାର ଶ୍ରୀକୃଷ୍ଣ ଜନ୍ମଭୂମି ଏବଂ କାଶୀର ବିଶ୍ୱନାଥ ଆଦି ଧର୍ମ ସ୍ଥାନକୁ ମୁକ୍ତକରିବା ନିମନ୍ତେ ଆଜି ମଧ୍ୟ ପ୍ରୟାସ ଚାଲିଛି । ଶ୍ରୀରାମ ଜନ୍ମଭୂମି ମୁକ୍ତି ଯଜ୍ଞ ସମିତି ଏଥିପାଇଁ କାର୍ଯ୍ୟରତ ଅଛି ।

ଶ୍ରୀରାମ ଜନ୍ମଭୂମି ମୁକ୍ତି-ଯଜ୍ଞ ସମିତିର ବର୍ତ୍ତମାନର ସାଧାରଣ ସମ୍ପାଦକ ଉତ୍ତର ପ୍ରଦେଶର ପୂର୍ବତନ କଂଗ୍ରେସୀ ସ୍ୱାସ୍ଥ୍ୟମନ୍ତ୍ରୀ ଶ୍ରୀ ଦାଉଦୟାଲ ଖାନ୍ନା, ଭାରତବର୍ଷର ପ୍ରଧାନମନ୍ତ୍ରୀ ଶ୍ରୀ ଲାଲବାହାଦୂର ଶାସ୍ତ୍ରୀ, ଶ୍ରୀ ମୋରାରଜୀ ଦେଶାଇ, ଶ୍ରୀ ଚରଣ ସିଂହଙ୍କୁ ମଧ୍ୟ ଏ ତିନୋଟି ଧର୍ମପୀଠ ଗୁଡ଼ିକୁ ମୁକ୍ତ କରିବାପାଇଁ ଅନୁ-ରୋଧ କରି ଆଲୋଚନା କରିଥିଲେ । ଶ୍ରୀ ଲାଲବାହାଦୂର ଶାସ୍ତ୍ରୀ ମଧ୍ୟ ଏ ବିଷୟରେ କିଛି ପଦକ୍ଷେପ ନେବାପାଇଁ ପ୍ରତିଶ୍ରୁତି ଦେଇଥିଲେ ମାତ୍ର ତାଙ୍କର ପ୍ରତିଶ୍ରୁତି କାର୍ଯ୍ୟକାରୀ ହେବାପୂର୍ବରୁ ତାଙ୍କର ସ୍ୱର୍ଗବାସ ହୋଇଗଲା । ଏତଦ୍ ବ୍ୟତୀତ ଭାରତବର୍ଷର ବର୍ତ୍ତମାନର ରାଷ୍ଟ୍ରପତି ଓ ତତ୍କାଳୀନ ପ୍ରଧାନମନ୍ତ୍ରୀଙ୍କୁ ୧୯୮୩ ମସିହାରେ ମଧ୍ୟ ସେ ପତ୍ରଲେଖି ଏ ସମ୍ପର୍କରେ ଜଣାଇଥିଲେ ମାତ୍ର ଗୃହ ମନ୍ତ୍ରଣା-ଳୟରୁ ତାଙ୍କର ଚିଠିକୁ ଉତ୍ତର ପ୍ରଦେଶ ସରକାରଙ୍କ ନିକଟକୁ ପଠାଇ ଦିଆ-ଯାଇଛି ବୋଲି ଉତ୍ତର ମିଳିଲା । ବାସ୍ତବରେ ହିନ୍ଦୁ ଜାଗରଣ ମଞ୍ଚର ୨ୟ ଅଧିବେଶନ ମୁଜାଫରପୁରରେ ବିଶେଷ ଚର୍ଚ୍ଚା ହୋଇଥିଲା । ଭାରତର ପୂର୍ବ-ତନ କାମଚଳା ପ୍ରଧାନମନ୍ତ୍ରୀ ଶ୍ରୀ ଗୁଲଜାରୀଲାଲ ନନ୍ଦା ତଥା ରାଷ୍ଟ୍ରୀୟ ସ୍ୱୟଂ ସେବକ ସଂଘର ସରକାର୍ଯ୍ୟବାହ ପ୍ରଫେସର ରାଜେନ୍ଦ୍ର ସିଂ ପ୍ରମୁଖଙ୍କ ଉପ-ସ୍ଥିତିରେ ଏ ସମ୍ବନ୍ଧରେ ଚର୍ଚ୍ଚା ହୋଇଥିଲା । ମାତ୍ର ସରକାରଙ୍କଠାରୁ କୌଣସି ପ୍ରକାରର ଆଶାନୁରୂପ ଉତ୍ତର ମିଳିଲା ନାହିଁ ।

## ଇମାମଙ୍କ ଉକ୍ତି

ଶ୍ରୀ ଖାନ୍ନାଙ୍କ ଅନୁରୋଧରେ ମୁସଲମାନମାନଙ୍କର ଦେଓବାନ୍ଦର ଇମାମ ମଧ୍ୟ ଏକ ଫତବା ଜାରିକରି କହିଲେ 'ରାମଜନ୍ମଭୂମି' ରାମଜନ୍ମଭୂମି ଅଟେ । ତାକୁ ଭାଙ୍ଗି ବାବରୀ ମସ୍‌ଜିଦ୍ ତା'ଉପରେ ନିର୍ମାଣ କରାଯାଇଛି । କୋରାନ୍ ଶରିଫ୍‌ରେ ମଧ୍ୟ ଉଲ୍ଲେଖ ଅଛିଯେ ଯେଉଁ ମୁସଲମାନ ଜବରଦସ୍ତି ଅନ୍ୟର ଜାଗା ଉପରେ ମସ୍‌ଜିଦ୍ ନିର୍ମାଣ କରେ ତେବେ ସେ ନମାଜକୁ ଖୁଦା ସ୍ୱୀକାର କରନ୍ତି ନାହିଁ । ଅନେକ ମୁସଲମାନ ମଧ୍ୟ ଏହାର ସପକ୍ଷରେ ମତଦେଲେ । ଏ ଫତବା ଭାରତ ସରକାରଙ୍କୁ ଦିଆଗଲା । ଭାରତ ସରକାର ଉତ୍ତର ଦେଇ କହିଲେ ଯେ ଏହି ଧର୍ମସ୍ଥଳୀ ଗୁଡ଼ିକ ଉତ୍ତର ପ୍ରଦେଶରେ ଥିବାରୁ ସ୍ଥାନୀୟ ସରକାରଙ୍କ ନିକଟକୁ ପଠାଇ ଦିଆଗଲା । କୌଣସି ପଦକ୍ଷେପ ନିଆଗଲା ନାହିଁ ।

ସେ ସମୟରେ ଅନେକ ଥର ଜନ୍ମଭୂମି ଉଦ୍ଧାର ପାଇଁ ଚେଷ୍ଟା ହୋଇଥିଲେ ମଧ୍ୟ ତାହା ବିଶାଳ ହିନ୍ଦୁ ସମାଜର ଗୋଟିଏ ବର୍ଗ ବା ଗୋଟିଏ ଗୋଟିଏ ଦଳ ଦ୍ୱାରା ଥରକୁ ଥର ହୋଇଛି ତେଣୁ ସଫଳତା ଆମ ହାତରୁ ଦୂରେଇ ଯାଇଛି । କିନ୍ତୁ କାଳଚକ୍ରର ଆବର୍ତ୍ତନରେ ବର୍ତ୍ତମାନ ସମଗ୍ର ହିନ୍ଦୁ ସମାଜକୁ ଏକ ଶକ୍ତିଶାଳୀ ତଥା ସୁସଂଗଠିତ ଏବଂ ସମସ୍ତ ପ୍ରକାରର କୁରୀତିରୁ ମୁକ୍ତ ଏକ ସୁନ୍ଦର ସମାଜ ଭାବରେ ଗଠନ କରିବା ପାଇଁ 'ବିଶ୍ୱହିନ୍ଦୁ ପରିଷଦ' ପ୍ରତିଷ୍ଠିତ ହୋଇଛି । ଏହି ବିଶ୍ୱହିନ୍ଦୁ ପରିଷଦର ଆହ୍ୱାନକ୍ରମେ ଗତ ୯ ଅପ୍ରେଲ ୧୯୮୪ ରେ ଦିଲ୍ଲୀଠାରେ 'ଧର୍ମ ସଂସଦ' ର ପ୍ରଥମ ଅଧିବେଶନ ବସିଥିଲା । ଏହି 'ଧର୍ମ ସଂସଦ'ରେ ସମଗ୍ର ଭାରତବର୍ଷର ସମସ୍ତ ମତ ପନ୍ଥ ସମ୍ପ୍ରଦାୟର ୫୮୫ ଜଣ ସାଧୁ ସନ୍ଥ ଉପସ୍ଥିତ ଥିଲେ । ଏହି ସୁ ଅବସରରେ ଶ୍ରୀରାମ ଜନ୍ମଭୂମି ମୁକ୍ତି ଯଜ୍ଞ ସମିତିର ସମ୍ପାଦକ ଶ୍ରୀ ଦାଉଦୟାଲ ଖାନ୍ନା 'ଧର୍ମ ସଂସଦ'ରେ ଅଯୋଧ୍ୟାର ରାମ ଜନ୍ମଭୂମି, ମଥୁରାର କୃଷ୍ଣ ଜନ୍ମଭୂମି ତଥା କାଶୀ ବିଶ୍ୱନାଥଙ୍କ ପବିତ୍ର ସ୍ଥାନକୁ ବିଧର୍ମୀମାନଙ୍କ କବଳରୁ ମୁକ୍ତ କରିବାପାଇଁ ଏକ ପ୍ରସ୍ତାବ ଆଗତ କଲେ ଏବଂ ସରକାରଙ୍କୁ ବାରମ୍ବାର ଅନୁରୋଧ ସତ୍ତ୍ୱେ କୌଣସି ପରିଣାମ ନ ହେବା କଥା ମଧ୍ୟ ଉଲ୍ଲେଖ କଲେ । ଏଥିରେ 'ଧର୍ମ ସଂସଦ' ଆଶ୍ଚର୍ଯ୍ୟାନ୍ୱିତ ହେଲେ ଏବଂ ଜନଜାଗରଣ କାର୍ଯ୍ୟପନ୍ଥା ସ୍ଥିର ହେଲା । ଆକୁମାରୀ ହିମାଚଳ ସମଗ୍ର ସନ୍ଥ ସମାଜ ଏ ଅପମାନର କାଳିମାକୁ ଲିଭାଇ ଦେବା ପାଇଁ ପ୍ରତିଜ୍ଞାବଦ୍ଧ ହେଲେ ।

ଏହି 'ଧର୍ମ ସଂସଦ' ଅଧିବେଶନରେ ହିଁ ଆଗାମୀ କାର୍ଯ୍ୟକ୍ରମ ସ୍ଥିର ହେଲା ଏବଂ ମା ଜାନକୀଙ୍କର ଜନ୍ମସ୍ଥାନ ବିହାରର (ମିଥିଳା) ସୀତାମଢ଼ୀ ଠାରୁ ଅଯୋଧ୍ୟା ପର୍ଯ୍ୟନ୍ତ ରାମ-ଜାନକୀ ରଥଯାତ୍ରାର ବ୍ୟବସ୍ଥା କରାଗଲା ।

ସେପ୍ଟେମ୍ବର ୨୫ ତାରିଖ ୧୯୮୪ ମସିହାରେ ଶ୍ରୀରାମ ଜାନକୀ ରଥରେ ସୀତା-ରାମଙ୍କର ଭବ୍ୟ ପ୍ରତିମା ସ୍ଥାପିତ ହୋଇ ପୂଜା ଆଦି ମହୋତ୍ସବ ପରେ ୨୬ ତାରିଖ ଦିନ ସୀତାଙ୍କର ଜନ୍ମସ୍ଥାନ ସୀତାମଢ଼ୀରୁ ରାମଙ୍କର ଜନ୍ମସ୍ଥାନ ଅଯୋଧ୍ୟା ଅଭିମୁଖେ ଯାତ୍ରା ଆରମ୍ଭ କଲା ।

ତ୍ରେତା ଯୁଗରେ ଜଗତ୍‌ଜନନୀ ଜାନକୀଙ୍କୁ ମୁକ୍ତ କରିବାକୁ ରାକ୍ଷସ ରାବଣର ବିନାଶାର୍ଥେ ରଘୁବୀର ଶ୍ରୀରାମ ବାନରସେନା ନେଇ ଲଙ୍କାଯାତ୍ରା କରି-ଥିଲେ, ଆଜି କଳି ଯୁଗରେ ମା' ଜାନକୀ ରଘୁବୀର ପତିତପାବନ 'ରାମ'ଙ୍କୁ ମୁକ୍ତ କରିବା ପାଇଁ ସୀତାମଢ଼ୀରୁ ଅଯୋଧ୍ୟା ଅଭିମୁଖେ ଯାତ୍ରା କଲେ ।

ରାମ-ଜାନକୀ ରଥ ଅକ୍ଟୋବର ୬ ତାରିଖ ଦିନ ଅଯୋଧ୍ୟାରେ ପହଞ୍ଚିଲା । ହଜାର ହଜାର ଜନତାଙ୍କ ଭିଡ଼ ରଥକୁ ସ୍ୱାଗତ କରିବାପାଇଁ ଉପସ୍ଥିତ ଥିଲେ । ୧୯୮୪ ମସିହା ଅକ୍ଟୋବର ମାସ ୭ ତାରିଖ ଦିନ ପବିତ୍ର ସରଯୂ ନଦୀର ଜଳ ନେଇ ଏକ ଲକ୍ଷ ରାମଭକ୍ତ ରାମଜନ୍ମଭୂମିକୁ ମୁକ୍ତ କରିବାପାଇଁ ସଂକଳ୍ପ କଲେ । ୮ ତାରିଖ ସକାଳୁ ରଥ ଅଯୋଧ୍ୟା ଛାଡ଼ିଲା ଉତ୍ତର ପ୍ରଦେଶର ରାଜଧାନୀ ଲକ୍ଷ୍ମଣ-ପୁରୀ ଅଭିମୁଖେ । ହଜାର ହଜାର ସାଧୁ ସନ୍ଥ ଓ ଜନତା ଏହି ବିଶାଳ ପଦ-ଯାତ୍ରାରେ ନିଜକୁ ସାମିଲ କରିଦେଲେ । ଅଯୋଧ୍ୟାର ପ୍ରମୁଖ ସାଧୁ ସନ୍ଥମାନେ ତଥା ସମିତିର ଅଧ୍ୟକ୍ଷ ଗୋରକ୍ଷପୀଠାଧୀଶ ମହନ୍ତ ଅବୈଦ୍ୟନାଥଜୀ, ବିଶ୍ୱହିନ୍ଦୁ ପରିଷଦର ଯୁଗ୍ମ ସାଧାରଣ ସମ୍ପାଦକ ଶ୍ରୀ ଅଶୋକ ସିଂହଲଙ୍କ ନେତୃତ୍ୱରେ ଏହି ବିଶାଳ ଶୋଭାଯାତ୍ରା ଆଗେଇ ଚାଲିଲା । "ବଢ଼ତେ ଚଲୋ ଯୋର ସେ ବୋଲ-ଜନ୍ମଭୂମି କା ତାଲା ଖୋଲୋ ।" ଧ୍ୱନିରେ ଗଗନ ପବନ ପ୍ରକମ୍ପିତ ହୋଇ-ଗଲା । ସମଗ୍ର ଉତ୍ତର ପ୍ରଦେଶର ଗ୍ରାମେ ଗ୍ରାମେ ନଗରେ ନଗରେ ଜାନକୀ ରଥକୁ ହଜାର ହଜାର ନରନାରୀ ତୋରଣମାନ କରି ସ୍ୱାଗତ କଲେ ।

ଉତ୍ତର ପ୍ରଦେଶର ରାଜଧାନୀ ଲକ୍ଷ୍ମଣପୁରୀ (ଲକ୍ଷ୍ନୌ)ରେ ରାମ-ଜାନକୀ ରଥ ଅକ୍ଟୋବର ୧୪ ତାରିଖରେ ପ୍ରବେଶ କଲା । ଆଠ ଲକ୍ଷ ଜନତା ରଥକୁ ସ୍ୱାଗତ ଜଣାଇଲେ । ଊର୍ମିଳାବାଟିକାରେ ଏକ ବିରାଟ ସାଧାରଣ ସଭାରେ

ବିଶ୍ୱହିନ୍ଦୁ ପରିଷଦର ଯୁଗ୍ମ ସାଧାରଣ ସମ୍ପାଦକ ଶ୍ରୀ ଅଶୋକ ସିଂହଲ ସମ୍ମିଳନୀ ତରଫରୁ ସରକାରଙ୍କୁ ରାମଜନ୍ମଭୂମି ତାଲା ଖୋଲି ଦେବାକୁ ଦାବୀ କଲେ ଏବଂ ଜନ୍ମଭୂମିର ଦାୟିତ୍ୱ ପରମପୂଜ୍ୟ ଜଗଦ୍‌ଗୁରୁ ଶ୍ରୀ ରାମାନନ୍ଦାଚାର୍ଯ୍ୟଙ୍କୁ ବିନା ସର୍ତ୍ତରେ ହସ୍ତାନ୍ତର କରିବାକୁ ଅନୁରୋଧ କରାଗଲା । ଏହି ଭଳି ଶ୍ରୀକୃଷ୍ଣ ଜନ୍ମଭୂମି ମଥୁରାର ଇଦ୍‌ଗାହ ତଥା କାଶୀ ବିଶ୍ୱନାଥଙ୍କ ମନ୍ଦିରକୁ ମଧ୍ୟ ସମ୍ପୃକ୍ତ ମନ୍ଦିର ଟ୍ରଷ୍ଟମାନଙ୍କୁ ଦାୟିତ୍ୱ ହସ୍ତାନ୍ତର କରିବାକୁ ଦାବୀକଲେ ।

ଏହି ମୁକ୍ତିଯଜ୍ଞ ସମିତିର ସଂରକ୍ଷକ ସମିତି ୧୦୦ ଜଣ ମହାତ୍ମାଙ୍କୁ ନେଇ ଗଠିତ ହୋଇଛି ଏବଂ ସେମାନଙ୍କର ମାର୍ଗ ଦର୍ଶନ ଅନୁସାରେହିଁ ସମିତି ପରିଚାଳିତ ବୋଲି ଶ୍ରୀ ସିଂହଲ କହିଥିଲେ । ଭାରତବର୍ଷର ବିଭିନ୍ନ ସ୍ଥାନରୁ ଆସିଥିବା ସାଧୁ ସନ୍ଥମାନେ ଜନ୍ମଭୂମିକୁ ମୁକ୍ତ କରିବାକୁ ସଂକଳ୍ପ ନେବାକୁ ଆହ୍ୱାନ ଦେଇଥିଲେ ।

ଯଦ୍ୟପି ଏହି ସମ୍ମିଳନୀ ପରେ ଉତ୍ତର ପ୍ରଦେଶ ସରକାର ସମିତିର କାର୍ଯ୍ୟକର୍ତ୍ତାଙ୍କ ସହ ବାର୍ତ୍ତାଳାପ କରିଥିଲେ କିନ୍ତୁ ଜନ୍ମଭୂମିର ତାଲା ଖୋଲିବା ବିଷୟରେ କିଛି ନିର୍ଦ୍ଦିଷ୍ଟ ପ୍ରତିଶ୍ରୁତି ଦେଲେ ନାହିଁ ।

ଏହାପରେ ରଥ ଦିଲ୍ଲୀ ଅଭିମୁଖେ ଯିବାକଲା କିନ୍ତୁ ଦୁର୍ଭାଗ୍ୟ ଯେ ରାମ-ଜାନକୀ ରଥ ଦିଲ୍ଲୀ ସୀମାରେ ପହଞ୍ଚିବାର ସମୟରେ ହିଁ ତତ୍‌କାଳୀନ ପ୍ରଧାନ-ମନ୍ତ୍ରୀ ଶ୍ରୀମତୀ ଗାନ୍ଧୀ ଆତତାୟୀର ଗୁଳିର ଶିକାର ହେଲେ । ଫଳରେ ମୁକ୍ତି-ଯଜ୍ଞର କାର୍ଯ୍ୟ ମଧ୍ୟ ବାଧାପ୍ରାପ୍ତ ହେଲା ।

୧୯୮୪ ଡିସେମ୍ବର ୧୬ ତାରିଖ ଦିନ ପୁଣି ସମଗ୍ର ଭାରତବର୍ଷରେ ଠିକ୍ ରାତି ୮ଟା ସମୟରେ ୬ ମିନିଟ ପର୍ଯ୍ୟନ୍ତ ରାମଜନ୍ମଭୂମି ମୁକ୍ତି ଉଦ୍ଦେଶ୍ୟରେ ଘଣ୍ଟା ଶଙ୍ଖନାଦ କରାଯାଇଥିଲା । ସେଦିନ ସମଗ୍ର ଭାରତ ବର୍ଷର ନଗର ଗ୍ରାମ-ମାନ କମ୍ପି ଉଠିଥିଲା ।

୧୯୮୪ ମସିହା ରାମନବମୀଠାରୁ ସମଗ୍ର ଦେଶରେ ସ୍ଥାନେ ସ୍ଥାନେ ୯ଦିନ ପର୍ଯ୍ୟନ୍ତ ଚାଲେ ଅନଶନ ଚାଲିଲା, ସଭା ସମିତିର ଆୟୋଜନ ହେଲା ଏବଂ ଭାରତର ପ୍ରଧାନମନ୍ତ୍ରୀ ତଥା ଉତ୍ତର ପ୍ରଦେଶର ମୁଖ୍ୟ ମନ୍ତ୍ରୀଙ୍କ ନିକଟକୁ ୩,୯୮୨ ପ୍ରସ୍ତାବ ୯,୬୫,୯୪୩ ଦସ୍ତଖତ ସହ ଏବଂ ୩୧,୧୭୬ ବ୍ୟକ୍ତିଗତ ପତ୍ର ତଥା ୫୦୦୦ ତାର (ଟେଲିଗ୍ରାମ) ପଠାଯାଇଥିଲା, କିନ୍ତୁ ଏ ସବୁ ସତ୍ତ୍ୱେ ମଧ୍ୟ ସରକାର ନୀରବ ରହିଛନ୍ତି ।

ବିଶ୍ୱହିନ୍ଦୁ ପରିଷଦର ଅଧ୍ୟକ୍ଷ ଶ୍ରୀ ଶିବନାଥ କାଟଜୁ ଏବଂ ଯୁଗ୍ମ ସାଧାରଣ ସମ୍ପାଦକ ଏ ସମ୍ବନ୍ଧରେ ଭାରତର ପ୍ରଧାନମନ୍ତ୍ରୀଙ୍କୁ ମଧ୍ୟ ସାକ୍ଷାତ କରିଥିଲେ ଏବଂ ତାଙ୍କଠାରୁ ମଧ୍ୟ କୌଣସି ଆଶାନୁରୂପ ଉତ୍ତର ପାଇ ନଥିଲେ । ପଞ୍ଜାବ ସମସ୍ୟା ଓ ଆସାମ ସମସ୍ୟା ଦେଶର ବଡ ସମସ୍ୟା ରୂପରେ ଦେଖା ଦେଇଥିବାରୁ ତା'ର ସମାଧାନ ଉପରେ ଗୁରୁତ୍ୱ ଦେଇଥିବାରୁ ଏ ବିଷୟ ତାପରେ ବିଚାର କରିବାକୁ ଶ୍ରୀ ଗାନ୍ଧୀ କହିଥିଲେ ।

କିନ୍ତୁ ବର୍ତ୍ତମାନ ରାଷ୍ଟ୍ର ଆକାଶରୁ ଏ ସମସ୍ୟା ବାଦଲ ସାମୟିକ ରୂପେ ହେଲେ ମଧ୍ୟ ଅନ୍ତର ହୋଇଛି ତେଣୁ ପୁଣି 'ଧର୍ମ ସଂସଦ'ର ୨ୟ ଅଧିବେଶନ ଉଡୁପୀଠାରେ ସମଗ୍ର ଭାରତବର୍ଷର ସାଧୁ ସନ୍ଥମାନେ ଆଗାମୀ କାର୍ଯ୍ୟକ୍ରମ ସ୍ଥିର କରିଛନ୍ତି । ସରକାରଙ୍କୁ ଆଗାମୀ ଶିବରାତ୍ରି ୧୯୮୬ ମସିହା ମାର୍ଚ୍ଚ ମାସ ୮ ତାରିଖ ପର୍ଯ୍ୟନ୍ତ ଜନ୍ମଭୂମିର ତାଲା ଖୋଲି ଦେବାକୁ ଅନୁରୋଧ କରିଛନ୍ତି । ୨ ଗୋଟି ରାମ-ଜାନକୀ ରଥ ମଧ୍ୟ ଉତ୍ତର ଭାରତରେ ଯାତ୍ରା କରି ଜନ ଜାଗରଣ କାର୍ଯ୍ୟକ୍ରମ ଚାଲୁ ରଖିଛନ୍ତି ।

ଏବେକାର ସଂସଦ ଅଧିବେଶନ ସମୟରେ ୮ ଡ଼ିସେମ୍ବର'୮୫ ଠାରୁ ସମଗ୍ର ଭାରତବର୍ଷର ଲୋକସଭା ତଥା ରାଜ୍ୟସଭା ସଦସ୍ୟ ମାନଙ୍କୁ ସାକ୍ଷାତ କରି ରାମ ଜନ୍ମଭୂମି କଥା ବୁଝାଇବା ପାଇଁ ପ୍ରତ୍ୟେକ ପ୍ରଦେଶରୁ ସାଧୁ ସନ୍ଥ ଓ କାର୍ଯ୍ୟକର୍ତ୍ତାମାନେ ଦିଲ୍ଲୀ ଯାତ୍ରା କରିଛନ୍ତି ।

ଆଗାମୀ ୮୭ ଫେବୃଆରୀ ୮ ତାରିଖ ମୌନୀ ଅମାବାସ୍ୟା ଦିନ ସମଗ୍ର ଭାରତବର୍ଷରେ ବିଭିନ୍ନ ସ୍ଥାନରେ ସଭାସମିତିମାନ ହୋଇ ପ୍ରଧାନମନ୍ତ୍ରୀଙ୍କୁ ଜନ୍ମ-ଭୂମିକୁ ଶିବରାତ୍ରି ସୁଦ୍ଧା ମୁକ୍ତ କରିବାକୁ ଅନୁରୋଧ କରି ପ୍ରସ୍ତାବ ଗ୍ରହଣ କରାଯିବ ଏବଂ ପ୍ରଧାନମନ୍ତ୍ରୀଙ୍କୁ ତାହା ଜଣାଇ ଦିଆଯିବ । ଏସବୁ ସତ୍ତ୍ୱେ ଯଦି ଜନ୍ମଭୂମି ମୁକ୍ତ ନ କରାଯାଏ ତେବେ ଅଯୋଧ୍ୟା ଚଲୋ ଆନ୍ଦୋଳନ ଆରମ୍ଭ ହେବ । ଦୀର୍ଘ ଦିନର ଏହି ରକ୍ତପାତର ତଥା ସଂଘର୍ଷକୁ ଅନ୍ତକରିବା ପାଇଁ ଭାରତବର୍ଷର ସାଧୁ ସମାଜ ଆଗେଇ ଆସିଛନ୍ତି । ଏପରିକି ନିଜ ଜୀବନ ବିନିମୟରେ ଜନ୍ମଭୂମି ମୁକ୍ତ କରିବା ପାଇଁ ପ୍ରତିଜ୍ଞା ନେଇଛନ୍ତି । ଭାରତବର୍ଷର ବୟୋବୃଦ୍ଧ ମହାତ୍ମା ସନ୍ଥ ପ୍ରଭୁ ଦତ୍ତ ବ୍ରହ୍ମଚାରୀ ମଧ୍ୟ ଆତ୍ମାହୂତି ଦେବାର ପ୍ରତିଜ୍ଞା କରିଛନ୍ତି । ଏ ଆତ୍ମାହୂତି ଯଜ୍ଞର ନେତୃତ୍ୱ ନେଉଛନ୍ତି ଅଯୋଧ୍ୟା ନିର୍ବାଣ ଆଖଡାର ମହନ୍ତ ଶ୍ରୀ ରାମଚନ୍ଦ୍ର ଦାସ

ପରମହଂସ ମହାରଜ- ସେ କହନ୍ତି ଯେ ବାବରୀ ମସ୍‌ଜିଦ୍‌କୁ ବାବର କୋର୍ଟ କଚେରୀ କରି ରାମ ଜନ୍ମଭୂମି ଉପରେ ମସ୍‌ଜିଦ୍ ତିଆରି କରି ନଥିଲା । ସେ ଲକ୍ଷ ଲକ୍ଷ ହିନ୍ଦୁମାନଙ୍କ ଜୀବନ ନେଇ ଜନ୍ମଭୂମି ଦଖଲ କରିଛି । ଆମେ ମଧ୍ୟ ସଂଘର୍ଷ କରି ଫେରାଇ ନେବୁ ।

ରାମ ଜନ୍ମଭୂମିରେ ମହମ୍ମଦ ସାହେବଙ୍କର ଜନ୍ମ ହୋଇନଥିଲା । ସେଠାରେ ଖୁଦାଙ୍କର ଅବତାର ହୋଇନଥିଲା । ତାହା ଭଗବାନ ରାମଙ୍କ ଜନ୍ମଭୂମି । କାଶୀ ଭଗବାନ ଶଙ୍କରଙ୍କ ଆଦିସ୍ଥାନ । ମଥୁରା ଭଗବାନ ଶ୍ରୀକୃଷ୍ଣଙ୍କର ଜନ୍ମଭୂମି । ତା ଉପରେ ମସ୍‌ଜିଦ୍ କରିବା 'ମଜହବୀ-ଜିଦ୍' ଅଟେ । ତେଣୁ ଏହା ହିନ୍ଦୁମାନଙ୍କୁ ଅବିଳମ୍ବେ ଫେରାଇଦେବା ଉଚିତ୍ । ଯଦି ସରକାର ଗଣତନ୍ତ୍ରର ମୂଲ୍ୟବୋଧ ତଥା କୋଟି କୋଟି ହିନ୍ଦୁଙ୍କର ହୃଦୟର ଭାବନା ନ ବୁଝୁଛି ତେବେ ସେ ଆମ ଉପରେ ଏକଛତ୍ର ବାଦ ଆରମ୍ଭ କରିଛି ।

ମକଦ୍ଦମାରେ ଜୟ ହେଲେ ମଧ୍ୟ ସରକାର ଆମକୁ ଜନ୍ମଭୂମି ଫେରାଇ ଦେବ ଏ ବିଶ୍ୱାସ ଆମର ସରକାରଙ୍କ ଉପରେ ନାହିଁ । କାଶୀରେ 'ସିଆ ମୁସଲ-ମାନଙ୍କର ଗୋଟିଏ କବର ସ୍ଥାନ ଥିଲା ଯେଉଁଠାରେ ସୁନ୍ନି ମୁସଲମାନମାନେ କବର କରିଦେଲେ । ସିଆମାନେ ହାଇକୋର୍ଟ କରି ମକଦ୍ଦମା ଜିତିଲେ । ସୁପ୍ରିମ କୋର୍ଟ କଲେ ସେଠାରେ ମଧ୍ୟ ଜିତିଲେ କିନ୍ତୁ ତାପରେ ମଧ୍ୟ ସୁନ୍ନିମାନଙ୍କର କବର ସେଠାରୁ ଉଠାଗଲା ନାହିଁ । ସୁପ୍ରିମକୋର୍ଟ ଚେତାବନୀ ଦେଲା—ଏ କନ୍ଦଳ ସରକାର ସୁପ୍ରିମକୋର୍ଟର ଆଦେଶକୁ କାର୍ଯ୍ୟକାରୀ କରାଇ ପାରୁନ । ଯଦି ସୁନ୍ନି ମୁସଲମାନଙ୍କୁ ନାରାଜ ନ କରିବାକୁ କବର ଉଠାଗଲା ନାହିଁ ସମଗ୍ର ମୁସଲମାନ-ମାନଙ୍କୁ ନାରାଜ କରି ସରକାର ଜନ୍ମଭୂମି ତାଲା ଖୋଲି ଦେବକି ? ତେଣୁ ଆମକୁ ସଂଘର୍ଷ କରିବାକୁ ପଡ଼ିବ । ଯଦି ଆସନ୍ତା ମହା ଶିବରାତ୍ରି ସୁଦ୍ଧା ଜନ୍ମଭୂମି ହିନ୍ଦୁ-ମାନଙ୍କୁ ଫେରାଇ ଦିଆ ନଯାଏ ତେବେ ମୁଁ କୌଣସି ଏକ ଦିନ ନିଶ୍ଚିତ କରି ଆତ୍ମଦାହ କରିବି । ମୋର ଏ ଅଟଳ ପ୍ରତିଜ୍ଞା । ଏ ପ୍ରତିଜ୍ଞାରୁ ମୋତେ କେହି ଟଳାଇ ପାରିବେ ନାହିଁ । ମନୁଷ୍ୟ କ'ଣ ସାକ୍ଷାତ ଭଗବାନ ରାମ ମଧ୍ୟ ଏ ପ୍ରତିଜ୍ଞାରୁ ମୋତେ ଟଳାଇ ପାରିବେ ନାହିଁ ।

**ଚନ୍ଦ୍ର ଉତ୍ତପ୍ତ ହୋଇଯାଇପାରେ, ସୂର୍ଯ୍ୟ ଶୀତଳ ହୋଇଯାଇପାରେ, ପୃଥିବୀ ନିଜର ସ୍ଥିତିକୁ ଛାଡି ଦେଇପାରେ, ସମୁଦ୍ର ନିଜର ଗମ୍ଭୀରତା ଛାଡି ଦେଇପାରେ କିନ୍ତୁ ରାମଚନ୍ଦ୍ର ଦାସ ପରମହଂସ ରାମ ଜନ୍ମଭୂମି ମୁକ୍ତି ପାଇଁ କରିଥିବା ପ୍ରତିଜ୍ଞାରୁ ବିଚଳିତ ହେବନାହିଁ ।**

**ହେବନାହିଁ ॥ ହେବନାହିଁ ॥ ହେବନାହିଁ ॥**

ବୃନ୍ଦାବନ ପରମହଂସଙ୍କର ଏହି ଉକ୍ତି ଆଜି ହଜାର ହଜାର ସାଧୁସନ୍ଥ ତଥା ସାଧାରଣ ଜନତାଙ୍କୁ ପ୍ରେରଣା ଦେଉଛି । ପ୍ରାୟ ୧୦ ହଜାର ସାଧୁ ଆତ୍ମଦାହ କରିବାପାଇଁ ସଂକଳ୍ପବଦ୍ଧ । ଅନେକ ସାଧାରଣ ଜନତା ମଧ୍ୟ ଜନ୍ମଭୂମି ପାଇଁ ପ୍ରାଣବଳୀ ଦେବାକୁ ଆଗେଇ ଆସୁଛନ୍ତି ।

ବିଶ୍ୱହିନ୍ଦୁ ପରିଷଦର ଯୁଗ୍ମ ସାଧାରଣ ସମ୍ପାଦକ କହନ୍ତି ସରକାର ତାଲା ନ ଖୋଲିଲେ ତାଲା ଖୋଲ ନୁହେଁ 'ତାଲା ତୋଡ଼ା' ଆନ୍ଦୋଳନ ହେବ । ଏହା କେବଳ ଉତ୍ତରପ୍ରଦେଶରେ ସୀମିତ ନହୋଇ ସମଗ୍ର ଦେଶବ୍ୟାପୀ ହେବ । କେବଳ ତାଲା ଖୋଲିଦେଲେ ହେବନାହିଁ, ଜନ୍ମଭୂମି ଉପରେ ହିନ୍ଦୁମାନଙ୍କର ଅଧିକାର ଆମରଦାବୀ । ଜନ୍ମଭୂମିକୁ ପରମପୂଜ୍ୟ ଜଗଦ୍‌ଗୁରୁ ରାମାନନ୍ଦାଚାର୍ଯ୍ୟଙ୍କ ହାତରେ ଅର୍ପଣ ନକରିବା ପର୍ଯ୍ୟନ୍ତ ଆନ୍ଦୋଳନ ଚାଲିବ ।

ଏ ସବୁକୁ ଦୃଷ୍ଟିରେ ରଖି ରାମଭକ୍ତଙ୍କ ବଳିଦାନକୁ ମନେପକାଇ ସ୍ୱାଧୀନ ଭାରତର ପ୍ରଥମ ରାଷ୍ଟ୍ରପତି ଡ଼କ୍ଟର ରାଜେନ୍ଦ୍ର ପ୍ରସାଦ ଗୁଜୁରାଟ୍‌ର ସୋମନାଥ ମନ୍ଦିର ପ୍ରତିଷ୍ଠା ଅବସରରେ କହିଥିବା "୧୨ ଶହ ବର୍ଷର କଳଙ୍କ ଆଜି ଧୋଇ-ଗଲା" କଥା ସ୍ମରଣ କରି ଏହି କଳଙ୍କକୁ ଧୋଇ ଦେବା ପାଇଁ ନିଜର ତନ-ମନ -ଧନସମର୍ପଣ କରି ହିନ୍ଦୁଭାଇମାନେ ଆଗେଇ ଆସିବାକୁ ପବିତ୍ର କର୍ତ୍ତବ୍ୟ ର ଆଜି ଆହ୍ୱାନ ଆସିଛି ।

ଆମର ପରମାରାଧ୍ୟ ପୂଜ୍ୟ ପରମ କାରୁଣିକ ପ୍ରଭୁ ଶ୍ରୀରାମଙ୍କୁ ତାଙ୍କର ଜନ୍ମ-ସ୍ଥାନରେ ତାଲା ବନ୍ଦକରି ଜେଲଯାତନା ଦେଇ ଆମେ ଆଉ କେତେଦିନ ଆନ-ନ୍ଦରେ ମାତି ରହିଥିବା ? ରାମ ରାମ ବୋଲି ଜପକରି ଦେହରେ ନାମାବଳୀ ପକାଇ ରାମାନନ୍ଦୀ ଚିତାକାଟି ଘର ଦୁଆରେ ରାମନାମ ଲେଖି ନିଜର ନାମ ମଧ୍ୟ 'ରାମ' ବୋଲି ରଖି ପରସ୍ପରକୁ ଦେଖାଦେଲେ 'ରାମ ରାମ' ବୋଲି କହି ରାମରାଜ୍ୟର ସ୍ୱପ୍ନଦେଖି ରାମଙ୍କ ରାଜ୍ୟରେ 'ରାମ ଚରିତ ମାନସ' ତଥା ବାଲ୍ମୀକୀ ଆଦିଙ୍କ ରାମାୟଣର ପାଠପୂଜାକରି ପରମ ପରାକ୍ରମୀ ଦଣ୍ଡକୋଦଣ୍ଡଧାରୀ ରାମଙ୍କର ପୂଜା-କରି ରାମଙ୍କର ଅପମାନକୁ ସହ୍ୟ କରିବା କେତେଦୂର ଯୁକ୍ତିଯୁକ୍ତ । ଭାରତବର୍ଷର ପଞ୍ଚଷଠି କୋଟି ହିନ୍ଦୁସମାଜ କଣ ଏତେ ଦୁର୍ବଳ ଏତେ ହୀନବୀର୍ଯ୍ୟ ହୋଇପଡ଼ିଛି ଯେ ଏ ସାମାନ୍ୟ କାର୍ଯ୍ୟ ଆଜି ଅସାଧ୍ୟ ହୋଇଯାଇଛି ? ହେ ଆକୁମାରୀ-ହିମାଚଳ ହିନ୍ଦୁ ସମାଜ ! ଆଜି ଏକ ହୁଅ; ଏକ କଣ୍ଠରେ ଯଦି ତୁମେ କେବଳ କହିଦେବ 'ରାମ ଜନ୍ମଭୂମି ମୁକ୍ତହେଉ' ବୋଲି ତେବେ ମଧ୍ୟ ରାମ ଜନ୍ମଭୂମି ମୁକ୍ତ ହୋଇ-ଯିବ । ତେଣୁ ଜାତିର ବର୍ତ୍ତମାନର ଏ ଆହ୍ୱାନକୁ ସ୍ୱୀକାରକରି, ଗ୍ରାମେ ଗ୍ରାମେ ନଗରେ ନଗରେ ପବିତ୍ର ରାମ ଜନ୍ମଭୂମିକୁ ମୁକ୍ତ କରିବା ପାଇଁ ଜନସାଧାରଣଙ୍କର ଚେତନା ଜାଗ୍ରତ କର ।

**ସମର ମରନୁ ପୁନି ସୁବସର ତୀରା**
**ରାମକାଜୁ ଛନ ଭଙ୍ଗୁ ଶରୀରା । ମାନସ ।**

ଯହଁ ରାମୁ ତହଁ ରହୁଛି ସମାଜୁ
ବିନୁ ରଘୁବୀର ଅବଧ ନହିଁ କାଜୁ ।।

ରାମଚରିତ ମାନସ



ମୁଁ ପୁଣି ଘୋଷଣା କରୁଛି ଯେ ଯଦି ଆଗାମୀ ଶିବରାତ୍ରି
( ୮ ମାର୍ଚ୍ଚ ୧୯୮୬ ) ପର୍ଯ୍ୟନ୍ତ ସରକାର ଶ୍ରୀରାମ
ଜନ୍ମଭୂମିର ତାଲା ନ ଖୋଲନ୍ତି ତାହା-
ହେଲେ ଆଗାମୀ ରାମନବମୀ ଦିନ
ମୁଁ ସ୍ୱେଚ୍ଛାରେ ଆତ୍ମଦାହ
କରିବି ।

—ପରମହଂସ ମହନ୍ତ ରାମଚନ୍ଦ୍ର ଦାସ

ସହାୟତା-**ଏକଟଙ୍କା ପଚିଶ ପଇସା ମାତ୍ର**